

# ଯକ୍ଷ

କାହ୍ନୁଚରଣ ମହାନ୍ତି

ମୂଲ୍ୟ : ଟ ୩-୦୦ ତିନଟଙ୍କା ମାତ୍ର

ଏଇ ଉପନ୍ୟାସଟି ମୁଁ ଯେତିକି ଲେଖୁଥିଲି ସେତକ ମୋରପତ୍ନୀ ପଢ଼ି ଶୁଣାଇ ଦେଉଥିଲେ । କାରଣ ଅଭ୍ୟାସ ବଶତଃ ସିନା ଲେଖି ଯାଉଥିଲି କିନ୍ତୁ ଆଖିରେ ପରଳ ମାଡ଼ି ଆସୁଥିବାରୁ ଯାହା ଲେଖୁଥିଲି ତାକୁ ନିଜେ ଭଲ କରି ପଢ଼ି-ପାରୁ ନ ଥିଲି । ମୋ ସ୍ତ୍ରୀ ଶ୍ରୀମତୀ ହେମନ୍ତ କୁମାରୀ ଦେବୀ ଗତ ଜୁନମାସ ଆଠ ତାରିଖରେ ସ୍ୱର୍ଗାରୋହଣ କଲେ । ତାଙ୍କରି ସ୍ମୃତି ଜାଗ୍ରତ ରଖିବା ନିମନ୍ତେ ମୁଁ ଏହି ଉପନ୍ୟାସଟି ତାଙ୍କରି ନାମରେ ଉତ୍ସର୍ଗ କରୁଛି ।

କାହ୍ନୁଚରଣ

[illegible] ପ୍ରକାଶନ
[illegible]



ପ୍ରଥମ ସଂସ୍କରଣ : ୧୯୮୪

JAKSHYA
by · Kanhu Charan

ରଙ୍ଗ ପ୍ରିଣ୍ଟର୍ସ, କଟକ-୮

# ୪

ଦାସେ ଗୋଟିଏ ଦନଭଙ୍ଗା କୁଡ଼ିଆରେ ବାଆସ୍ତରୀ ବର୍ଷ ତଳେ ଜଣେ ଅଧା-ଉପାସିଆ ମୂଲିଆର ଘରେ ଖଣ୍ଡାୟତ କୁଳରେ ଜନ୍ମ ଲଭିଥିଲେ । ସେ କୁଡ଼ିଆ ଓ ତା ପାଖର ଦେଢ଼ମାଣିଆ ନାନା ଜାତିର ଦଳ ପରିପୂର୍ଣ୍ଣ କୋକ ଭରଭର ପୋଖରୀ ପାଖରୁ ଅଳପ ଦୂର ଛାଡ଼ି ଥିଲା ତାଙ୍କର ଦୁଇବଖୁରିଆ ଗୁଳଘର ଖଣ୍ଡି । ଘର କୁହ ଅବା କୁଡ଼ିଆ କୁହ, ସେଇଠି ତାଙ୍କର ବାପା ମଧ୍ୟ ଜନମିଥିଲେ । ତା' ପୂର୍ବର ଘଟଣା ସେ ଜାଣନ୍ତି ନାହିଁ । ତେବେ, ପିଲାଦିନେ ସେ ବୁଢ଼ାମାନଙ୍କ ମୁହଁରୁ ଶୁଣିଛନ୍ତି, ତାଙ୍କ ବଂଶ କୁଆଡ଼ୁ କିଏ, କୁଆଡ଼ୁ ଆସି ନଅଙ୍କ ଦୁର୍ଭିକ୍ଷବେଳେ ଏଇ ପୋଖରୀ କୂଳରେ ମରଣକୁ ବରଣ କରିବାକୁ ଅପେକ୍ଷା କରି ରହିଥିଲେ । କିନ୍ତୁ ଦଇବର କଲ୍ୟାଣ କି ଅଭିଶାପ କେଜାଣି, ତୋଟା ଭିତର ଗୋଟିଏ କଡ଼ିକିଆ ଆମ୍ବଗଛ ତଳର କୁଡ଼ିଆରେ ମରଣକୁ ବରଣ କରିବାକୁ ହାତ ମେଲାଇ ଅପେକ୍ଷା କରିଥିବା ଏହି ହତଭାଗ୍ୟ କୁଟୁମ୍ବକୁ ମରଣର ଦୂତମାନେ ଡରକୁ ଥରଇ ଛାନିଆଁ କରି ଶେଷକୁ ଥୁ-କରି, ଛି-କରି ଓଲଟି ଘାଣ୍ଟି ହେବାକୁ ଛାଡ଼ି ଗ୍ଲଲିଗଲେ ।

ସେହିସବୁ ଧନ ଭିନ୍ନେ ଭିନ୍ନେ ଥାନରେ ଏଇ ଦଳୁଆ ପୋଖରୀ, ଯାହାର ଆୟତନ କୁଆଡ଼େ ଏତେବଡ଼ ଥିଲା ଯେ ସେପାଖର ଲୋକ ଏପାଖକୁ ବଡ଼ ବଡ଼ କଣେଇ ଭଳିଆ ଦିଶନ୍ତି ତା'ରି ଭିତରେ । ଥିଲା ସେସବୁ ପୋତିଲା ଧନ ଏବେ ଯକ୍ଷ ହୋଇ ଗଡି ଅଧରେ ପୋଖରୀର ଗ୍ଲରିକଡ଼ରେ ବୁଲନ୍ତି । କୁଆଡ଼େ କିଳିକିଳା ରଡ଼ି ଦେଇ ତାଙ୍କର ପ୍ରେତ ମାଲିକମାନେ ତାଙ୍କ ପଛେ ପଛେ ଧାଇଁଥାନ୍ତି ।

ଲୋକଙ୍କର ଶୁଣିବାର କଥା, ନିଜେ କେହି ଦେଖିନାହାନ୍ତି, ସେମାନଙ୍କର ଭେଟଣା ହେଲେ, ଝଡ଼ାଫୁଙ୍କା ନ କଲେ ମନ୍ତ୍ର ନ ପଢ଼ିଲେ ମରଣ ହେବାର କଥା । ତେଣୁ ଦୂରେଇ ରହିବା ବୁଦ୍ଧିମାନର କାମ । ଦେହ କିଳେଇନେବା ତ ଆହୁରି ଭଲ । ଲୋକଙ୍କର ଏପରି ବିଶ୍ୱାସ ।

କୁବେର ଗୁଣି ବିଦ୍ୟା ଶିଖିଛନ୍ତି । ଜଣେ ପଶ୍ଚିମା ଅବଧୂତିଆ ବାବାଜିଙ୍କର ପାଞ୍ଚବର୍ଷ ସେବା କରି, ନିଜେ ତାଙ୍କ ପାଇଁ ଭିକ୍ଷା କରି ବାବାଜିଙ୍କୁ ସେ ଦିନକୁ ଦୁଇଭରି ଲେଖାଏଁ ଗଞ୍ଜେଇ ଦେଉଥିଲେ । ସେ ଦାଢ଼ିଆ ବାବାଜି ଜମ୍ବୁଦ୍ୱୀପ ଭରତବର୍ଷର ଚାରିଧାମ ଦର୍ଶନ କରିଥିଲେ ।

କୁଆଡ଼େ ସେ ବାବା ମନ୍ତ୍ର ଶିଖାଇ, ଏକାକ୍ଷରୀ ମନ୍ତ୍ର ତ, ଶିବଜଟା ଗଞ୍ଜିକା; ବୋଇଲେ ଗଞ୍ଜେଇର ଧୂଆଁ ଶୋଷାଇ ଏକାଗ୍ର ଚିତ୍ତରେ ତ୍ରିକୂଟରେ ଲୟ ଲଗାଇବାର କୌଶଳ ଶିଖାଉଥିଲେ । ଯିଏ ଏହା କରେ ସେ ସପ୍ତରଙ୍ଗୀ ଶୂନ୍ୟତା ଦେଖେ, ତା'ରି ଭିତରେ ଜ୍ୟୋତି । ତେବେ, ମୁକ୍ତି ଓ ବୈକୁଣ୍ଠପ୍ରାପ୍ତି ତ ସୁନିଶ୍ଚିତ !

କୁବେର ଦୁଇ ତିନିଥର ଗଞ୍ଜିକା ସେବନ କରିଥିଲା । ବାବାଜିମାନଙ୍କ କହିବାମତେ ଓ ଶିଖାଇବା ପ୍ରକାରେ ପଦ୍ମାସନରେ ବସି ତ୍ରିକୂଟରେ ଲୟ ଲଗାଇବାକୁ ଚେଷ୍ଟା କରି ହତାଶ ହୋଇଥିଲା । ଶେଷକୁ ଭାବିଲା ଯଦି ଧର୍ମ କରି ମୁକ୍ତି ଲଭିବ ତ, ଜ୍ୟୋତିଃ ଦର୍ଶନ କରିବା ଅପେକ୍ଷା 'ନିତାଇ-ଗୌର ରାଧେଶ୍ୟାମ' କହି ସଂକୀର୍ତ୍ତନରେ ଯୋଗଦେବା ଭଲ ଅବା ମାଳା ଜପିବା ଭଲ ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ ସଂସାରକୁ କୁବେର ଭଲ କରି ଚିହ୍ନିଲା । ସେ ଜାଣିଲା—'ଆଗେ ମଉସା, ଜଡ଼ ପଇସା ।' ନିଜେ ଫନ୍ଦି ଫିକର କରି ଧନ ଅନ୍ୟମାନଙ୍କଠାରୁ ଓଟାରି ନିଜ ପାଖରେ ଠୁଳ ନ କଲେ, ଆଉ କେହି ଆଣି ତମ ଆଗରେ ତମ ଅଗଣାରେ ଅଜାଡ଼ିଦେବେ ନାହିଁ । ଏଥିପାଇଁ ଠାକୁର ଠାକୁରାଣୀଙ୍କ ପୂଜା, ସଞ୍ଜବୁଡ଼ିଆ ନାମ ଜପ, କପାଳରେ, ଛାତିରେ ଚନ୍ଦନ ଛାପା ମାରି ଜପ କରିବା ଲୋଡ଼ା ହେବ ନାହିଁ ।

କଥନୀ ରହିଛି—'ବାଣିଜ୍ୟରେ ଲକ୍ଷ୍ମୀ ମିଳନ୍ତି' ପୁଣି ପ୍ରଚଳିତ କଥାମାନ ରହିଛି—'ଅନ୍ଧେ ବହୁତେ ବାଣିଜ୍ୟ-ବେପାର ତ ଅନେକ କରନ୍ତି, କିନ୍ତୁ ଯେତେ ଭେଇଲେ ତ ସେତିକି ଖରଚ ବଢ଼େ । ବଳିବ କାହୁଁ ଯେ ଭବିଷ୍ୟ ପାଇଁ ସଞ୍ଚିହେବ ! ସେଥିରେ କି ବେପାର ହେବ ?

ଏପରି ଅଭିଯୋଗକୁ ଖଣ୍ଡନ କରି ସଞ୍ଚୟ କରିବାକୁ ମଧ୍ୟ ମନ୍ତ୍ର ରହିଛି । ଜାଣିବାର ଚତୁର ଲୋକେ କହାରନ୍ତି କୁବେରଙ୍କର ଅଲୁତ ଦେଳରୁ କାନରେ ବାଜିଛି, ମନ ଘେନିଛି, ଅଭ୍ୟାସ କରିବାକୁ ଆଗ୍ରହ ବଢ଼ିଛି ।

ମନ୍ତ୍ରଟି ହେଲା—'ପେଟକାଟ ବଣିଜକୁ ଅନ୍ୟ କେଉଁ ବେପାର ସରି-ନୁହେଁ ।' ଏହାର ଅର୍ଥ ଏହା ନୁହେ ଯେ, ଯେକୌଣସି ଉପାୟରେ ଯାହା ଅରଜିବ ତାକୁ ସବୁ କେବଳ ସଞ୍ଚୟ କରିବ । ପେଟପାଇଁ କିଛି ଖରଚ କରିବ ନାହିଁ ଓ ଦେହର ଆବରଣ ପାଇଁ ଓ ଚଳନର ସୁବିଧା ପାଇଁ କିଛି ବ୍ୟୟ କରିବ ନାହିଁ ।

ରହିବାପାଇଁ ନିରପଦ ଘର ଖଣ୍ଡିଏ ଲୋଡ଼ା । ସମାଜରେ ସିନ୍ଧିକଟା ଚୋର ଯେତିକି, କଅଁଳକୁହା ମୁହଁଭଙ୍ଗୀ କରି ମନ କିଣିନେଲା ପରି ଡକାୟତ ଦଳ ତ ତହୁଁ ଅଧିକା । ସେମାନଙ୍କ ମଧ୍ୟରୁ ମୁହଁଭଙ୍ଗୀ କରି, ଘରକୁ ଟେକି ନୁଆଁଇ କହିବାର ଲୋକ, ବେଶୀ ତ ମାଇପେ, ତହୁଁ ଅଧିକ । ସେମାନେ ମନ ତରଳାଇ ତମ ଧନ ଟଳାଇନେବାକୁ ନିଶ୍ଚୟ ଚେଷ୍ଟିତ । ତମ ହାତରୁ ଖସିଲେ ଅଣବାହୁଡ଼ା ।

କିନ୍ତୁ ସଂସାରରେ ଘର କରି ଚଳିବାକୁ ହେଲେ, ଏକଶିଙ୍ଗା-ବାର୍‌ହା ହୋଇ ତ ଚଳିହେବ ନାହିଁ । କେତେକଙ୍କୁ ଆପଣାର ପୁଣି କେତେକଙ୍କୁ ପର କରିବାକୁ ତ ନିଶ୍ଚୟ ହେବ । ଆଗରୁ ଜାଣିଲା-ଶୁଣିଲା ବିଜ୍ଞ ଲୋକମାନେ କଥନ ଛାଡ଼ିଯାଇଛନ୍ତି, ଅମୂଲ୍ୟ ରତନ—'ସଂସାରରେ ଯଦି ଭଲରେ କରିବ ଘର, କର ଅଧେ ଆପଣାର ତ ଅଧେ ପର' ! ଏହା ତ ନିଘଟ ସତ; ଅମୂଲ୍ୟ ବଚନ କେ କରିବ ଆନ ରେ ଧନ !

ମନ କହିଲା, 'ଆରେ କୁବେର, ପୁଣି ଭୁଲିଗଲୁ କି ? ଆଜି ମଲେ କାଲିକି ଦି' ଦିନ ; ଏ ଦେହକୁ ଖାଉଣଥିବେ ଶ୍ୱାନ-ଶୃଗାଳ ବାଣ୍ଟିରେ !' ଧେତ୍, ଏଇଟା ହତାଶିଆ ଡରୁଆ କଥା ; ଡରୁଆ ଛେରୁଆଙ୍କ ମୁହଁକୁ ମାନେ । କାମିକା ଲୋକ ଏ ଧାରଣା ମନରୁ ଦୂର କରିବା ଉଚିତ । ସେ କେବେ ମରିବ ବୋଲି ଜୀବନ କ'ଣ ଜାଣିବା ଆଗରୁ, ତା'ର ଚଳନର ଖଟାମିଠା

ଇତ୍ୟାଦି ଷଡ଼ରସ ଗ୍ରାଖିବା ଆଗରୁ, ବସି ଭବିଷ୍ୟର ଝଡ଼ଝଞ୍ଜାକୁ ମନେ ପକାଇ ଛଟପଟ ହେବ, କାରୁଣ୍ୟ କରିବ, ରକ୍ଷାକର, ରକ୍ଷାକର ବୋଲି ରଡ଼ି ଛାଡ଼ିବ !

ଏସବୁ ବାଗ୍ଳ ଭବନା । ଧେତ୍ ! ଏକୁଟିଆ ଜୀବନର ଅବାନ୍ତର ଅରଣା ଭବନା, ଅଳସ-ବେଳର, ଦାୟିତ୍ୱ ନଥିଲା ଜୀବନର ବାଗ୍ଳ ଭବନା । ସେହି ଭବନାରୁ ନିଜକୁ ରକ୍ଷା କରିବାକୁ ଦିନେ ଅପରାହ୍ନରେ ବାରିକ-ବୃତ୍ତିକୁ ଜୁହାରିଲା । ହାତରେ ତ କିଛି ଧନ ହେଲାଣି । ଏବେ ମହାଜନୀ ବେପାର କଲେ ଭଲ । ହାତର ଧନକୁ ସୁଧରେ ଜିନିଷ ବନ୍ଧକ ରଖି କରଜରେ ଦେବ । ଦଶଟଙ୍କାର ମାଲ ରଖି ସେଥିପାଇଁ ଟଙ୍କାକୁ ଦୁଇଅଣା ମାସିକ ସୁଧରେ ପାଞ୍ଚଟଙ୍କା ଦେଲେ ଭଲ । ଖାତକ କରଜ ପରିଶୋଧ କଲେ ଭଲ; ନୋହିଲେ ମାଲ ହେବ ତାଙ୍କର । ତେଣିକି...ଯାହା, କାଳେ ପ୍ରାପତ ହୁଏ ତାହା' ।

ବୈଶାଖ ମାସର ମଝିଆମଝି । ପ୍ରଚଣ୍ଡ ଖରା । ପଦାକୁ ଗୋଡ଼ କାଢ଼ିହେଉନାହିଁ । 'ତଥାପି ଅତି ଜରୁରୀ କାମ ଥିବା ଲୋକେ କେହି କେହି ଛତା ଧରି ପାଣ୍ଡୋଇ କିମ୍ବା କଠଉ ପିନ୍ଧି ଯା-ଆସ କରୁଥିଲେ । ଝାଞ୍ଜିପବନ ଗମ୍ ଗମ୍ ବୋହିପଡ଼ୁଥିବା ଝାଳୁଆ ଦେହକୁ ବେଳେବେଳେ ଥଣ୍ଡା କରୁଥିଲା ।

ସୂର୍ଯ୍ୟଦେବତା ଧରଣୀରାଣୀଙ୍କ ଉପରେ କାହିଁକି କୋପ କରି, ଜାଣ ନିଆଁ ବରଷଣ କରି ଧରଣୀମାତାଙ୍କ ପିଲାଙ୍କୁ ହଇରଣ କରିବାକୁ ନିଆଁପରି ତାତିଲା ବାଣ ବରଷଣ କରୁଥିଲେ । ସେହି କୋପରୁ ପରିତ୍ରାଣ ପାଇବାକୁ ମଣିଷ କେତେ ଉପାୟ କରିଥିଲା । ଉପକରଣ ବ୍ୟବହାର କରୁଥିଲା ।

ଯେଉଁଥିପାଇଁ ଯେ କ୍ଷମ ।

ବୁଢ଼ା ବ୍ରାହ୍ମଣଙ୍କର ସମ୍ବଳ ଥିଲା ଛତା ଖଣ୍ଡିଏ । ତା' ଉପରେ କେତେ ଜାଗାରେ ଧଳା ଧଳା ପଟି ପଡ଼ିଛି । ଖୋଲା ଗୋରା ତନୁର ବିଭିନ୍ନ ସ୍ଥାନରେ ଚନ୍ଦନର ଚିତା ଲାଗିଥିଲା । ସେ ତାଙ୍କର ବାମ ହାତରେ ଛାତିଏ ଉଞ୍ଚର ବେଶ୍ ମୋଟାଳିଆ କଣ୍ଡା ବାଉଁଶ ଠେଙ୍ଗା ଧରିଥିଲେ । ସେ ଠେଙ୍ଗାଟିରେ ଗୋବ ମରିଛି । ତେଲ ପିଇ ପିଇ ପାଚିଛି ।

ସେହି ବାଉଁଶ ବାଡ଼ିଖଣ୍ଡି ନନାଙ୍କର ସାହା, ଏକୁଟିଆ ଜୀବନର ସଙ୍ଗୀ । କେବଳ ତେଲରେ ପାଚିନାହିଁ, ବହୁବିଧ ମନ୍ତ୍ରରେ ସିଦ୍ଧ ! ବୃଦ୍ଧଙ୍କ ନାମ ବିମଳ ଶର୍ମା, ଡାକ ନାମ ବାମନନା ।

ପଞ୍ଚଷଠି ବର୍ଷର ବୃଦ୍ଧ ବାମନନା ସେହି ଉଦୁଉଦିଆ ଖରବେଳର ଖଇଫୁଟା ତାତିରେ ଊଣେଇଶ ବର୍ଷର ସୁନାଖଡ଼ିକା ଯୁବତୀ ଝିଅଟିର ହାତଟିଏ ଧରି ଖର ସମୁଦ୍ର ପାରି କରେଇ ନେବାକୁ ଓଟାରି ଓଟାରି ନେଉଥାନ୍ତି । ଯୁବତୀଟି କୁରରୀ ପରିଏ ଉଚ୍ଚ ସ୍ୱରରେ ଗଡ଼ି ଛାଡ଼ିଥାଏ, ଯେତେକି ଆକାଶଟି ଅଗ୍ନି ବରଷଣ କରି ଅଜାଡ଼ି ହୋଇପଡ଼ିବ । ଆଗରେ ନଦୀ ଖଣ୍ଡୀର ତଳେ ତା'ର ବାଲୁକାମୟ ଶେଯ । ଛୋଟ ପାଣି-ଧାରଟି ଆରପାଖର ଖଣ୍ଡୀତଳେ ବିସ୍ତୀର୍ଣ୍ଣ ବାଲିଶେଯ ଉପରେ ମରୀଚିକା ଜଳ ପ୍ରବାହର ମିଛିମିଛିକା ଢେଉ ଖେଳାଉଛି । ଚଲ ଅଙ୍କାବଙ୍କା ବାଟରେ ଆଗ୍ରହେ ସେହି ଆଡ଼କୁ ମୋହିଁଛନ୍ତି ।

କୁବେର ବେହେରା ବିଚିତ୍ର ମଣିଲ, କାହିଁକି ଏପରି ନିଆଁଝରା ଉଦୁଉଦିଆ ଖରବେଳଟାରେ ଖଇଫୁଟା ତାତିରେ ନଇଁ ଆସିଥିବା ବୁଢ଼ାଟି ଝିଅଟାକୁ ହାଣମୁହଁକୁ ନେଲପରି ଆଗରୁ ଓଟାରୁଛି ?

ପାଖକୁ ଗଲା । କରଯୋଡ଼ି ମୁଣ୍ଡରେ ଲଗାଇ ଅଣ୍ଟା ନୁଆଇଁ ଓଳଗି ହେଲା । ସଙ୍ଗେ ସଙ୍ଗେ ବୁଢ଼ାନନାଙ୍କର ତୁଣ୍ଡରୁ କଲ୍ୟାଣର ବାଣୀ ବାହାରିଲା— 'ଦୀର୍ଘାୟୁ ହୁଅନ୍ତୁ; ସବୁ ରିଷ୍ଟ ତମର ଖଣ୍ଡନ ହେଉ ।' ପଚାରିଲେ, "କାହିଁକି ବ୍ରାହ୍ମଣର ବାଟ ଓଗାଳିଲ, ବାପ ? ଆମକୁ ନଦୀବାଲି ପାରିହୋଇ ଚଲା ବାଟରେ ପାଣିରେ ପଶି ନଦୀ ପାରିହେବାକୁ ହେବ । ମୋ'ର ଏଇ ବିଧବା ଝିଅକୁ ସେପାରି ଗ୍ରାମରେ ତା'ର ଶଶୁରଘରେ ଛାଡ଼ି ପୁଣି ଗୋଡ଼େ ଗୋଡ଼େ ଫେରିଆସିବି । ସେତେବେଳଯାଏ ଯା ବୋଉ ମତେ ଅପେକ୍ଷା କରି ଉପାସରେ ବସିଥିବ ।"

ହାତ ଯୋଡ଼ି କୁବେର ପଚାରିଲା, "ପର୍ବତୀ ଦେବୀଙ୍କର ଶଶୁର-ଘରେ ତାଙ୍କର ଆଉସବୁ କିଏ ଅଛନ୍ତି ଯେ ସେ ଯାଇ ସେମାନଙ୍କର ସେବାକରି ଚଳିବ ?"

"ସମସ୍ତେ ଅଛନ୍ତି ରେ ବାପ, ଏକା ଜଣଙ୍କୁ ଛାଡ଼ି; ବୋଉଲେ, ଶାଶୁ, ବିଧବା ସନ୍ତାନହୀନା ନଣନ୍ଦ, ଦରବୁଢ଼ୀ ହେଲେଣି, ବଡ଼ଜାଆ, ନାଙ୍କର ଗୁଡ଼ିଏ ପୁଅଝିଅ । ଧନୀଘର ତ ! ଗଲା-ଆଇଲା ଗ୍ଧକର ଗ୍ଧକରଣୀ ଅନେକ ।

"ସମ୍ପତ୍ତି ଯେ କାହିଁକି କେତେ । ସେଠାକୁ ଗଲେ, ଝିଆରୀ ପୁତୁରାଙ୍କୁ ନିଜର କରି ପାଳି ଚଳିଲେ, ଗୁରୁଜନଙ୍କର ସେବା କଲେ ନିଉଁଛୁଣା ଜୀବନଟା ତା'ର ଭଲରେ କଟିଯାଆନ୍ତା । ଯୁବତୀ ଟୋକୀଟା, ମୋ କୁଡ଼ିଆରେ ବାପଘରେ ଉପାସ ଭୋକରେ କଟ ଇବା କି ଲୋଡ଼ା ?"

କୁବେର ପାର୍ବତୀର ପଟ ନେଇ ପୁଣି ହାତ ଯୋଡ଼ି କହିଲା, 'ମା ହାତର କୋଳଥ-ପଇତି ଟିକିଏ ଅବା ମାଣ୍ଡିଆଢାଉ ଚାଟିଆଏ ସଙ୍ଗେ କନସିରି ଅବା ମଦରଙ୍ଗା ଶାଗ ତରକାରି, ପିତାଶାଗ ଗଇତା ଟିକିଏଠଉଁ କ'ଣ ତାଙ୍କ ଛିଛାକର, କ୍ଷୀରୀପୁରି ସମାନ ହେବ ?

"ମୁଁ ପଦେ ପାର୍ବତୀ ନାନୀକୁ ପଗ୍ଧରିବି କି ନନା ? ପିଲାଦିନରୁ ତାକୁ ମୁଁ ସେଇଆ ଡାକି ଆସିଛି । ସେ ମୋ'ଠଉଁ ଦି'ବରଷ ବଡ଼ । ମତେ ସତର ହେଲେ, ତାକୁ ଉଣେଇଶ । କେତେ ଦୁଃଖ ସହି, କେତେ ଘାଟରେ ପାଣି ପିଇ ପିଇ ଆସିଲିଣି, ସହି ସହି ଧନ ସଞ୍ଚିଲିଣି, ସିଆଣା ହେଲିଣି । ମୋ କଥା ତମେ ଶୁଣ ଗୋସେଇଁ, ମୋ' କଥା ତମେ ମାନ ।"

ବିମଳ ଆଗ୍ରହ୍ୟେ କହିଲେ, ଷୋଳ ସତର ବର୍ଷର ସାହସୀ ବିଗ୍ଧରବନ୍ତ ଟୋକାଟିଏ ତୁ । ଆଉ କିଏ ହୋଇଥିଲେ ତା' କଥା ମୁଁ ଫୁଟ୍‌କି ମାରି ଉଡ଼ାଇ ଦେଇଥାନ୍ତି, କିନ୍ତୁ ତୋ' କଥା ମୁଁ ବିଗ୍ଧର କରିବି । କ'ଣ ତୁ କହୁଛୁ କହ ।

କୁବେର ହାତଯୋଡ଼ି କହିଲା, ମୁଁ ଆପଣଙ୍କ ଲେଖାରେ ପୋକଟିଏ । ମୋ'ର କେତେ ବୁଦ୍ଧି ? ତେବେ, ନିଶ୍ଚୟ କହିବି । ତେଣୁ ଖରରେ ଛଟପଟ ନ ହୋଇ ମୋ କୁଡ଼ିଆକୁ ଆସନ୍ତୁ । ଆସ ଗୋ ନାନୀ ! ମୋ'ର ମନର କଥା ମୁଁ ଖୋଲିକରି କହିବି । ମନକୁ ପାଇଲେ କରିବ, ନ ପାଇଲେ ନାହିଁ । ଛାଇ ନେଉଟିଲେ ନିଜ ହାତରେ ନବାତ ପାଣିରେ କାଗେଜି ଚିପୁଡ଼ି ସର୍ବତ କରି ପିଇବା ।

ବିମଳ ଆଗ୍ରହେ ବିଗ୍ରରିଲେ, ଶୂଦ୍ରର ଭକ୍ତି କରି ବ୍ରାହ୍ମଣର ଆଶୀର୍ବାଦ ଲଭି ପୁଣ୍ୟ ଅର୍ଜିବାକୁ ଆଗ୍ରହ ହେଲଣି । ଆଶୀର୍ବାଦ ଲଭ କରିବା ସହଜ କଥା ନୁହେଁ । ଅବଶ୍ୟ ଫଳବାନ ହେବ । ଏଇ ଜନ୍ମରେ ଶୂଦ୍ର କୁବେର ଦଳାଇ ବଳେ ଜାଣିବ, ଯଦି ପୂର୍ବଜନ୍ମମାନଙ୍କରେ ପ୍ରାରବ୍ଧପାତକ ପ୍ରବଳ ଥିବ, ଅର୍ଜିତ ସିନା ଖଣ୍ଡିତ ହେବ, ପ୍ରାରବ୍ଧର ପାପଫଳ ଭୋଗ କରିବାକୁ ଆଉ ଗୋଟିଏ ଜନ୍ମ ଲଗିବ, ଅବା ଅଧିକ ।

ଶୁଣି ଜାଣିବା କଥା । ସତ ମିଛ ଠାକୁରେ ଜାଣନ୍ତି । କୁବେର ଦଳେଇର ଦି'ବଖୁରିଆ ଘରର ଅଗଣାରେ ପାଦ ପକାଇଲେ । ଘଞ୍ଚ କଣ୍ଟା କଣ୍ଟା ଡାଳରେ ଜମି ଗ୍ରରିଗୁଣ୍ଠ ହେବ ଆବଦ୍ଧ ହୋଇଛି । ଘର ପଛରେ ଟିକିଏ ଦୂରରେ ଛୋଟ ପୋଖରୀଟିଏ, ଆୟତନରେ ଜମି ଦେଢ଼ଗୁଣ୍ଠ । ବେଶ୍ ପରିଷ୍କାର ଜଳ, ମାନ୍ଧ ଭରପୂର–କଉ, ଶେଉଳ, ପୋହଳା ଓ ରେହି ଭକୁଡ଼ ଜାଆଁଳ ଏବର୍ଷ କୁବେର ଯୋଗାଡ଼ କରି ଛାଡ଼ିଛି । ପୋଖରୀ ହୁଡ଼ାର ଗ୍ରରିପଟେ କୁବେର କେଉଁ ଜାଣିଲାର ଲୋକମାନଙ୍କର ଉପଦେଶ ପ୍ରକାରେ ଆଠଟି ନଡ଼ିଆଗଛ ରୋପଣ କରିଥିଲା । ବେଶ୍ ବଢ଼ିଆଛି ହୋଇଛି । ଫଳି ନାହିଁ ।

ଫାଟକ ଖୋଲି କୁବେର ଆଡ଼େଇ ଠିଆ ହୁଅନ୍ତେ ବୃଦ୍ଧ ବିମଳ ଆଗ୍ରହେ କୁବେରର ଅଗଣା ଭିତରେ ପଶିଲେ । ତାଙ୍କ ପଛେ ପଛେ ପାର୍ବତୀ । ଶେଷକୁ କୁବେର ସେ ଅଗଣା ଭିତରକୁ ପ୍ରବେଶ କରିବାକୁ ଛୋଟ ବାଟଘରର ଏକ ପାଖିକିଆ କବାଟଟିର ଶିକୁଳିର କୋଳପ ଖୋଲି ଠିଆ-ମେଲା କଲା । କହିଲା, ସେହିବାଟେ ଅଗଣା ଭିତରକୁ ଯାଅ ନାନୀ, ଅଗଣା ଭିତରେ କୂଅ, ତା' ମୂଳରେ ଦଉଡ଼ି ଅଛି । ନୋଟା ଓ ବାସନ ମୋ'ର ସେଇ ଶୋଇଲା ଘରେ ସିନ୍ଧୁକର କଡ଼ରେ ନୋଟାଟିଏ ଥୁଆ ହୋଇଛି । ତା'ର ପେଟରେ ଲକ୍ଷ୍ମୀ-ନୃସିଂହଙ୍କର ଜମକୁଟ ମୂର୍ତ୍ତି କୁଟା ହୋଇଛି । ଅତିଥି-ଅଭ୍ୟାଗତଙ୍କ ପାଇଁ ସେଇଥିରେ ପାଣି କାଢ଼ିଦିଏଁ ।

କୁବେର ବେଢେ଼ଗ ଘରର ଦି'ଫାଳିଆ ଜମକୁଟକର କବାଟ ମୁକୁଳାଇ କହିଲା, ଶୋଷରେ ବୁଢ଼ା ନନାଙ୍କର ହଂସା ଉଡ଼ିଯାଉଥିବ, ତମର ବି ପାର୍ବତୀ-ନାନୀ, ଭୋକରେ ପେଟ ଜଳୁଥିବ । ଝୁଲୁଥିବା ଶିକାରେ ତଳ ହାଣ୍ଡିରେ ସଦ୍ଯ ଚୂଡ଼ା ଅଛି, ତା'ଉପର ପଲମରେ ଅଛି ନବାତ । ଆର ଶିକାରେ ଯେଉଁ ଠେକି

ଅଛି ସେଥିରେ ତ ଅଛି ଖରମର ନିରେଳା ଘୁଆଘିଅ, ମୋର କାଳୀଗାଈର ଦୁଧର କ୍ଷୀର ।

'ତାତିଲା ପେଟକୁ ଆହୁରି ଅଧିକ କଷ୍ଟ ଦେଇ ନିଜେ ଦୁଃଖ ଭୋଗ କର ନାହିଁ, ଅବା ବୁଢ଼ା ବାପଙ୍କୁ ଦୁଃଖ ଦଅ ନାହିଁ । ମୋ ଅପରାଧ ବଢ଼ିବ । ମୋ ପାଇଁ ନାନୀ ତୁମେ ବୁଢ଼ା ବ୍ରାହ୍ମଣଙ୍କୁ ସନ୍ତୁଷ୍ଟ କରି ଭୋଜନ କରାଅ । ସେଇଠୁ ତମେ ନିଜେ ତମର ଭୋକ ଦୂର କର । ବିଲରେ କାମ କିଛି କରି ମୂଲିଆଙ୍କ ସଙ୍ଗେ ଜାଣ ମୂଲିଆ ହୋଇ ମୁଁ ଆଜି ପାଇଟି କରୁଥିଲି । ହାଲିଆ ହୋଇଛି । କାଲି ରାତିର ପଖାଳ ସକାଳେ ଓଲିପିଆଜ ଲଗାଇ ଖାଇଥିଲି । ଭାତ ଗ୍ରରିପାଞ୍ଚ ଗେଫାକୁ ପେଟେ ଡୋରଣି । ଅଣ୍ଟିଲା ନାହିଁ ବୋଲି ଚୂଡ଼ା-ନଡ଼ିଆ କୋରା ଓ ନବାତ ଚକଟା । ମୁଁ ଟା ପେଟକାବୁରା । ମୋତେ ଭୀମ-ପେଟୁଆ ବୋଲି କହିପାର ।

'ନାନୀ ଗୋ, ଗୁଡ଼ାଏ ବାହାପିଆ କଥା କହିଲେ ତମର କି ଆମର ପେଟ ଭରିବ ନାହିଁ । ଏକୁଟିଆ ମଣିଷ ଆଉ ଜଣକୁ ପାଖରେ ପାଇଲେ ତା'ର ସବୁ ଦୁଃଖ ଓ ଅଭାବ । ପୁଣି ଏକୁଟିଆ ଜୀବନର ଆନକୁ ଅଜଣା ଯନ୍ତ୍ରଣାର କାହାଣୀ ବଖାଣିବାକୁ ଛଟପଟ ହୁଏ । ତମର ଜୀବନର ଦୁଃଖ ଓ ମନର ଯନ୍ତ୍ରଣାର କାହାଣୀ ଶୁଣିଲି । ଦୁଃଖ ଅନୁଭବ କଲି । ତମର ଜୀବନର ଦୁଃଖ-ଯନ୍ତ୍ରଣା କେହି ଦୂର କରିପାରିବେ ନାହିଁ ଗୋ ନାନୀ, ପ୍ରଚଳିତ ପ୍ରଥା ତମକୁ ଆଉ ଗୋଟିଏ ନୂଆ ସଂସାର କରିବାକୁ ଅନୁମତି ଦେଇନାହିଁ କି ଦେବ ନାହିଁ, ଆଉନ୍ ଯାହା ପଛେ କହୁ । ତମର ପୋଡ଼ିଗଲା ସଂସାରକୁ ଫେରି ନ ଗଲେ ରାତିବ ବୃଦ୍ଧ ପିତା କିପରି କେତେଦିନ ଚଳାଇବେ ? କିଅଣ ବା ତାଙ୍କର ସମ୍ବଳ ?

ପାର୍ବତୀର ଆଖିରୁ ଦୁଇଧାର ଲୁହ ଝରିଆସିଲା । ସେତକ ଦେଖି କୁବେର ନିଜର ନିର୍ବୋଧପଣିଆ ଜାଣିଲା । ଯେଉଁ କଟା ଘାଆ ପାର୍ବତୀର ହୃଦୟକୁ ହାକୁହାକୁ କରି ନିରତ ଜଳାଉଛି, ଯାହା ଭଲ କରିବାର ଉପାୟ ନାହିଁ, ତହିଁରେ ଶୀତଳ ଚନ୍ଦନର ଲେପ ନ ଦେଇ ସେ କଲିଚୂନର ଛିଟା ପକାଇଚି, ମହା ଅପରାଧ କରିଛି ସେ କୈବର୍ତ୍ତ ଟୋକାଟା । କ'ଣ କରିବ,

କଣ କହିବ ବୁଝି ନ ପାରି ସେ ପାର୍ବତୀର ପାଦରେ ଲୁହାରିଲା । ମୁଣ୍ଡ ଟେକି ହାତଯୋଡ଼ି କହିଲା, "ମୋର ଦୋଷ ମୁଁ ମାଗିନେଉଛି, ଅଳପ ପାଠୁଆ, ଜାଣ ମୂର୍ଖ କୈବର୍ତ୍ତ ଟୋକା ମୁଁ, କ'ଣ କହିବାକୁ ଯାଉଣୁ କ'ଣ କହିଦେଲି । ଆଉ ଏବେ କହିବି ନାହିଁ । ଆଗ ଭୋଜନ; ସେଇଠୁ ମୁଁ ତମ ବାପାଙ୍କ ହାତରେ ତମ ପାଇଁ ମାତ୍ର ଏକଶତଟି ଟଙ୍କା ଦେବି । ସେଇଠୁ—

'କାହିଁକି ଦେବ, କୁବେର ?'

'ଦାନ ଦେବି ନାହିଁ, ନାନୀ, ମୁଁ ବୟସରେ ପିଲା ହେଲେ କି ହେବ, ମୁଁ ଧନକୁ ଚିହ୍ନିଛି । ମୁଁ ମୋର ଭଣ୍ଡାରରକ୍ଷକ । ଶୁଣିଛି, କୁବେର ବୋଲି କେବେ କେଉଁ କାଳରେ ଇନ୍ଦ୍ରରାଜାଙ୍କର ଜଣେ ଭଣ୍ଡାରରକ୍ଷକ ଥିଲେ । ତାକୁ ଜଗୁଥିଲେ ଜଣେ ଯକ୍ଷ, ଅଭିଶାପଗ୍ରସ୍ତ ବିନତା ଗର୍ଭଜ ଦୈବ ପୁତ୍ର । ପମ୍ପା ସରୋବର କୂଳରେ ବାଟ ଓଗାଳି ପଡ଼ିଥିଲା, ସ୍ୱର୍ଗର ନନ୍ଦନ-କାନନ । ସେ ବିନତା ନନ୍ଦନ, ତା ତନୟ ପବନ-ନନ୍ଦନ ଜଗି ରହିଥିଲା, ବାଟ ଓଗାଳିଥିଲା । ପଞ୍ଚ ପାଣ୍ଡବଙ୍କ ଅଜ୍ଞାତ ବାସ ବେଳେ ସେ ବାଟ ଓଗାଳି ପଡ଼ି ରହିଥିଲା ।

କୁବେର କହିଲା ପାର୍ବତୀକୁ, ବୃଦ୍ଧ ବିମଳାନନ୍ଦ ଶର୍ମା ଶୁଣୁଥାନ୍ତି, ( ତାଙ୍କୁ ଶୁଣାଇବାର ଉଦ୍ଦେଶ୍ୟରେ ହିଁ ତ ସେ କହୁଥିଲା ) 'ନାନୀ ଗୋ, ତମେ ଯଦି କିଛି ମନେ ନ କରିବ, ନନାଙ୍କର ଯଦି ଆପତ୍ତି ନ ଥାଏ, ମୁଁ ତାଙ୍କୁ ଏବେ ଯେଉଁ ଏକଶହ ଟଙ୍କା ମନଖୁସିରେ ଦେବି, ତାକୁ ସେ କେତେ-ଗୁଡ଼ିଏ ସର୍ତ୍ତରେ ଗ୍ରହଣ କରିବେ । ଲେଖାପଢ଼ା, ସାକ୍ଷୀ-ଗୁହା ମୋର ଲୋଡ଼ା ନାହିଁ । ବୁଢ଼ା ବ୍ରାହ୍ମଣ ତୁଣ୍ଡର ହିଁ ପଦ ମୋ'ପକ୍ଷରେ ଯଥେଷ୍ଟ ।'

ପଞ୍ଚଷଠୀ ବର୍ଷର ବୃଦ୍ଧ ବ୍ରାହ୍ମଣ ବିମଳାନନ୍ଦ ଶର୍ମା, ଯାହାଙ୍କର ସୁନ୍ଦର ସ୍ୱାସ୍ଥ୍ୟ ଓ ରୂପ ମନ ଆକର୍ଷେ, ସ୍ନେହ ଜର ଜର କଣ୍ଠରେ ପଚାରିଲେ, 'କଥଣ ତୁମର ସର୍ତ୍ତ ଆଗ ନ ଶୁଣିଲେ ତମର ଦାନ ମୁଁ ଗ୍ରହଣ କରିବି କିପରି, ବାବୁ ? ମୁଁ ସତ୍ୟଭ୍ରଷ୍ଟ ହେବାକୁ ଚାହେ ନାହିଁ । କୁହ, ମୁଁ ଶୁଣେ, ବିଚାର କରେଁ ।'

କୁବେର ବେଦେଗ କହିଲା, ମୋର ସର୍ତ୍ତ ମୋଟେ ସର୍ତ୍ତ ନୁହେଁ; ସେଇଟା ଗୋଟାଏ ପ୍ରସ୍ତାବ । ଗ୍ରହଣ କରିବା ନ କରିବା ଆପଣମାନଙ୍କ ଉପରେ ନିର୍ଭର କରେ । ଏହି ଟଙ୍କାରେ ଧାନ କିଣାଇ, ନିଜର ଢିଙ୍କିରେ କୁଟାଇ

ଚାଉଳ କରନ୍ତୁ । ଚାଉଳ ବିକିବେ, ଖୁଦ ମଲୁଆ ବି ବିକିବେ । କୁଣ୍ଡା ବି କିଣିବା ଲୋକ ଅଛନ୍ତି । ବିକ୍ରୟ ନିଶ୍ଚୟ ହେବ । ଲାଭ ହେବ । ପୁଣି ଧାନ କିଣା ହେବ । ଏ ପ୍ରକ୍ରିୟା ଚାଲିଥିବ ତ, ଅସୁବିଧା ହେବ ନାହିଁ । ଲୋଡ଼ା ହେଲେ ଆଉ ଧନ ମୁଁ ଦେବି ।'

'ଆହୁରି ଧନ ଦେବ ! ବୁଢ଼ା ବ୍ରାହ୍ମଣକୁ ଧାରୁଆ ରଖିବ ? କେବଳ କଲ୍ୟାଣ କରିବା ଛଡ଼ା ମୋ'ର ତୁମକୁ ଦେବାର କିଛି ସମ୍ବଳ ନାହିଁ, ବାବୁ !'

କୁବେର ଡରଡର ହୋଇ ପଚାରିଲା, ଗୋଟିଏ ପ୍ରାର୍ଥନା କରିବି, କିଛି ମନେ କରିବ ନାହିଁ ନନା ?

'କ'ଣ କୁହ, ମନେ କରିବି କାହିଁକି ? ତମ ପରି ଜଣେ ସରଳ ନିରୀହ ବାଳକ, ଯାହାର ସଂସାରରେ ଆପଣାର ବୋଲି କେହି ନାହିଁ, ତା'ର କିଛି ଉପକାର କରିପାରିଲେ ମୁଁ ଅବଶ୍ୟ ପ୍ରୀତ ହେବି । କ'ଣ କହ, ବାବୁ !'

କୁବେର କହିଲା, ମୋ'ରି ଜମିଗୁଡ଼ିକରୁ ଅଧିକାଂଶ ଭାଗଚାଷୀମାନଙ୍କୁ ଦିଆହୋଇଛି । ତଥାପି, ଚାଷବାସ ଓ ଫସଲ ଉପରେ ଦୃଷ୍ଟି ରଖିବାକୁ ହେବ ତ ! ହାତରେ ଚାଷ ଯେତେ କରହେଉଛି ତା' ଉପରେ ତ ପୁଣି ନଜର ରଖିବାକୁ ପଡ଼ିବ । ନିଜକୁ ବି ବିଲରେ ଆଣ୍ଠେଇବାକୁ ହେବ ।'

ପୁରୋହିତ ଶର୍ମା କହିଲେ, 'ମୁଁ ଜାଣେ ରେ ପୁଅ, ଚଷା—ଲକ୍ଷେ ଜୀବ ପୋଷା କି ! ଦେହର ଝାଳରେ ଗାଧୋଇ ନିଜେ ମେହେନତ୍ କରି ସେ ସଭିଙ୍କର ଜୀବନଦାତା ଫସଲ ଫଳାଏ । କ'ଣ କହୁଛୁ ଏବେ କହ ।'

—କ'ଣ କି ନନା, ପାର୍ବତୀ ନାନୀ ଯଦି ଦୁଇବେଳା ମୋ' ପାଇଁ ମୋ' ଘରେ ଆସି ରନ୍ଧନ କରନ୍ତେ ମୁଁ ସୁସ୍ଥରେ ଗଣ୍ଡିଏ ଖାଇପାରନ୍ତି । ନିଜ ହାତରେ ଦୁଇବେଳା ରନ୍ଧି ଖାଇବା ସମ୍ଭବ ହେଉ ନାହିଁ । ରାତିରେ ପଖାଳ ଅବା ଚୁଡ଼ାଭଜା ଖାଇ ବେଳ କଟୁଛି । ପାର୍ବତୀ ନାନୀ ଯଦି ଆସି ଦି'ବେଳା, ଅନ୍ତତଃ ସକାଳବେଳା ବା ଉପରବେଳା ଆସି ମୁଠାଏ ଫୁଟାଇ ଦିଅନ୍ତେ, ଭଲ ହୁଅନ୍ତା ।

'ଭୋଜନ ତ କରିବେ ଆପଣମାନେ ; ତା'ଛଡ଼ା ଯାହା ବେତନ ଗ୍ରହିଁବେ, ମୁଁ ଦେବି ।'

ବିମଳ ନନା କହିଲେ, ତୋ'ର ଦୁଃଖ ମୁଁ ବେଶ୍ ଉପଲବ୍ଧି କରି-ପାରୁଛି । ମୋ'ର ସ୍ତ୍ରୀଙ୍କୁ ନ ପଗ୍ଭରି ହଁ କି ନାହିଁ ଉତ୍ତର ମୁଁ ଦେଇପାରିବି ନାହିଁ ।

ପାର୍ବତୀର ମାତା ସମ୍ମତ ହେଲେ ହତଭଗିନୀ ଝିଅଟିକୁ ଗୋଟିଏ ନିଯୁକ୍ତି ମିଳିବ । ତାର ବାପା ତ ପାଖରେ ଥିବେ । କୁବେର ବେହେରା ପିଲାଟି କିଛି ଅଛବ ହରିଜନ ନୁହେଁ । ଖଣ୍ଡାୟତ ଘରର ସାହାହୀନ ପିଲାଟିଏ । ବହୁ ଧନ ସମ୍ପତ୍ତିର ଅଧିକାରୀ । ସାହସୀ ପିଲା । ସେ ଯାହା ସହାନୁଭୂତି ଖୋଜୁଛି, ତା'ର ଧନର ବିନିମୟରେ । କୁଆଡ଼େ ଏଇ ପିଲାଦିନରୁ ବି ସେ ହିସାବୀ । ହେଉ, ଭଲ କଥା । ପାର୍ବତୀ ତାକୁ ସାହାହେଉ ଧନ ବିନିମୟରେ ।

× × × ×

ପାର୍ବତୀର ମାତା ସମ୍ମତ ହେଲେ ।

ବୃଦ୍ଧ ବିମଳ ଶର୍ମାଙ୍କର ସଂସାର ବି ସୁଖରେ ଚଳିଲା । ଟୁଆଁଟୁଇଁଙ୍କ ପରି ବୃଦ୍ଧ ଓ ତାଙ୍କର ପତ୍ନୀ ରହିଲେ । ଗ୍ଭଳି ଘରକୁ ଢିଙ୍କିଶାଳରେ ପରିଣତ କରିବା ସଂପ୍ରତି ଲୋଡ଼ା ପଡ଼ିଲା ନାହିଁ, ଅବା ଉଚ୍ଚଜାତିର ବଡ଼ିମାକୁ ବିକ୍ରୟ କରି ଧନ ଅର୍ଜିବାକୁ ହେଲା ନାହିଁ । ପାର୍ବତୀର କାମ ପାଇଁ କୁବେର ନିତି ଯାହା ଦିଏ ସେତକ ଯଥେଷ୍ଟ ହୁଏ; ମାଗତା ଯୋଗୀଙ୍କ ଥାଳରେ ଓ ଭିକାରିଙ୍କ କାନିରେ ଦେବାକୁ ଭେଟାଏ ।

ଭଲରେ ଚଳୁଥିଲା । ଲୋକେ ଗରିବ ବ୍ରାହ୍ମଣର ଶିରୀ ଦେଖି-ପାରିଲେ ନାହିଁ । କିଏ କାହାକୁ କହିଲା, 'ଦେଖ ହେ, ବୁଢ଼ା ବ୍ରାହ୍ମଣଟା ଗୋଟାଏ ବେପାର ଚଳାଇଲା ପରି ଲାଗୁଛି । ବିଧବା ଝିଅ ପାର୍ବତୀଟାକୁ କାଉ 'କା-କା' କରୁଣୁ ପଠାଇ ଦେଉଛି । ଖଣ୍ଡେଇତ ଟୋକା କୁବେର ବେହେରା ଘରେ ସେ ଗଣ୍ଡ-ଟୋକୀଟା ଯାଇଁ ଫେରୁଛି ଗତି ଅ ଧରେ ।

'ଏ କିପରି ବେଖଗ ହେ ! ଝୋଟକୁ ନିଆଁ ଖର...ଜଳିଯାଏ ଫର ଫର । କାହାର ଉମର କେତେ, ଜାଣିବାକୁ କ'ଣ କିଏ ପାଞ୍ଜି ଧରି ବସିଛି ?

ଅଘଟନ ଅସନା ଧାରଣା ହେଲେ ବି ଦୁନିଆରେ ବିଘଟନ ଘଟୁଛି । କିନ୍ତୁ କେବେ ଘଟିବ କି ନ ଘଟିବ ବୋଲି ଏବହୁଁ ଅନ୍ୟମାନେ ତାହାରି ସମ୍ଭାବନାରେ ସେମାନଙ୍କର ପ୍ରକୃତି ପ୍ରକାରେ ପୁଲକିତ ହେବେ କାହିଁକି, ଅବା ବିଚଳିତ ବ୍ୟଥିତ ହେବେ କାହିଁକି ?

କ୍ରମେ ଘଟଣାର ପ୍ରବାହଟି ଗ୍ରାମରେ ଅତି ସ୍ୱାଭବିକ ହୋଇଗଲା । ସମସ୍ତେ ଜାଣିଲେ, ବିମଳ ଶର୍ମାଙ୍କ ବାଲ୍ୟ-ବିଧବା ଯୁବତୀ ଝିଅଟି ଗ୍ରାମର ପ୍ରାନ୍ତରେ ଥିବା ଧନଶାଳୀ କୁବେର ବେହେରା ଘରକୁ ଦୁଇବେଳା ରନ୍ଧନ କାର୍ଯ୍ୟ କରିବାକୁ ଯାଏ । ଯେତେ ଡେରି ହେଲେ ବି ରତିରେ ଫେରିଆସେ । ଝଡ଼ ବର୍ଷା ବି ମାନେ ନାହିଁ ।

ସେଇ ଗାଁ ଝିଅ ତ, ବାଟର କେଉଁଠି କ'ଣ ଅଛି ତାକୁ ଜଣା । ସେ ଜାଣିଛି ଯେ ବାଟ କଡ଼ରେ ଯେଉଁ ବୁଢ଼ା କୋଚିଲା ଗଛ ଅଛି ତା' ଉପରେ ଦିନେ ଦିନେ ଦଳତଡ଼ା ମାଡ଼ଖିଆ ଗେଧ ମାଙ୍କଡ଼ ଥାଇ ତା ଶତ୍ରୁ କେଉଁ ଆର ଗେଧ ଉପରେ ରାଗି ରହିରହିକା ଦାନ୍ତ କଡ଼ମଡ଼ କରୁଥାଏ । ବେଳେ-ବେଳେ ଅଧିକ କ୍ରୋଧରେ ହୁଁକାର ଛାଡ଼େ, ଡାଳ ଦୋହଲାଏ । ଅତି ଅସମ୍ଭାଳ ହେଲେ ତଳକୁ ଓହ୍ଲାଇ ଚଲାବାଟର ଏପାଖ ସେପାଖ ହୋଇ ଆର ବଳୁଆ ଗେଧକୁ ଉଣ୍ଡୁଥାଏ, ଯେଉଁଟା ଆଉ କୁଆଡ଼ୁ ଆସି ତାକୁ ତା' ଦଳରୁ ଚଡ଼ିଛି, ନିସ୍ତୁକ ମାଡ଼ ମାରିଛି ଓ ତା'ର କୋତରୀ ଦଳର ଅଧିକାରୀ ହୋଇଛି ଓ ଆରଗ୍ରାମର ଆମ୍ବତୋଟାର ଅଧିକାରୀ ହୋଇ ବସିଛି ।

ଅନ୍ୟ କେହି ହେଲେ ଡରନ୍ତା କିନ୍ତୁ ଗାଁ ଝିଅ ପାର୍ବତୀ ଡରେ ନାହିଁ । ଯେତେ ଡେରି ହେଲେ ବି ମରଦ ଟୋକାଙ୍କ ପରି ହାତରେ ଗୋହାତିଆ ଠେଙ୍ଗାଟାଏ ଓ ଜଳିଲା ଲଣ୍ଠନ ଧରି ସେ ଗୁଲିଆସେ ।

ଅଣ୍ଡିରଚଣ୍ଡୀ ଗଣ୍ଡଝିଅଟା, ଏବେ ସେ କୁଆଡ଼େ ମୁଖର ହେଲାଣି । ତାକୁ ପଦେ ଜିଜ୍ଞାସିଲେ ସେ ନିଶ୍ଚୟ ପାଞ୍ଚପଦ ଝାଡ଼ିଦେବ । ଚଣ୍ଡୀ ଦୁର୍ଦ୍ଦଣ୍ଡୀର ମୁହଁରେ କିଏ ତୁଣ୍ଡି ବାନ୍ଧିପାରିବ !

କେହି ନାହିଁ । ପରର ଦୁର୍ନାମ ଶୁଣିବାକୁ ଅନେକଙ୍କୁ ଭଲ ଲାଗେ । ପାଞ୍ଚ କଥା ଶୁଣିଲେ ତହିଁରେ ଯୋଖିଯାଖି ମୁଖଭଙ୍ଗୀ କରି, ସତେକି ଆପେ ଦେଖିଲପରି କହିଲା ବେଳକୁ ସେତକ ତିରିଶ କଥା ହେଲା । ସାଧୁ ଲୋକେ ଏହା ଜାଣନ୍ତି । ତେଣୁ ପରଘର ଚର୍ଚ୍ଚାରେ ଯୋଗ ଦିଅନ୍ତି ନାହିଁ ।

ମିଛ ଦୁର୍ନାମ ଓ ସମ୍ଭାବନା ଦିନେ ସତ ହୋଇଯାଏ । ଦଇବି ଯୋଗ ତ । ଦୋଷ କାହାର !

× × × ×

ବିମଳ ଶର୍ମାଏ ମଧ୍ୟ ନିଆଶ୍ରୀ ପିଲଟାକୁ ନିଜେ ଦେଖିବାକୁ ଯାଇ-ଥିଲେ । ଗ୍ଦରିଦିନ ହେବ ପିଲଟା ( ଅବଶ୍ୟ ତାଙ୍କର ଆଖିରେ ପିଲ, ନୋହିଲେ ଅଠର ବର୍ଷର ତରୁଣ ସେ କୁବେଶ ବେହେଗ ଯକ୍ଷ ଟୋକା ) ଜ୍ୱରରେ ପଡ଼ିଛି । କମ୍ପୁଛି । ତାଙ୍କର ଜଡ଼ିବୁଟି, ପାଚନପାଣି ଖାଇ ମଧ୍ୟ ଜ୍ୱର ଛାଡ଼ିଲ ନାହିଁ । ସେଇଠୁ ଟନିକ୍ । ବେଳ ଦେଖି ସେବନ କରାଇବାକୁ ପଡ଼ିବ ।

ପାର୍ବତୀ କହିଲ, 'ସେତକ ମୁଁ କରିପାରିବି ନନା, କିନ୍ତୁ ଉଜାଗର ରହି ପିଲଟାକୁ ଜଗି ରହିବାକୁ ହେବ । କେତେବେଳେ ଘୁମାଉଁ ଘୁମାଇଁ ଶୋଇ-ପଡ଼ିଲେ ଅବଶ୍ୟ ନାଗ୍ଦର । ବୁଲା କୁକୁର ଭୁକି ଭୁକି ଅରଣା ଗୋରୁ ଓ ବିଲୁଆ ଶିଆଳ ଅବଶ୍ୟ ତଡ଼ିବ, ଅଜଣା ମଣିଷକୁ ବି ଛାଡ଼ିବ ନାହିଁ । ବାରିର ଫାଟକ ବନ୍ଦ ଥିବ । ଲୁହା କଡ଼ାରେ ବନ୍ଦ ହୋଇ ଭିତରୁ କୋଲପ ପଡ଼ିଥିବ । ସେହିପରି ଆଗର ଓ ପଛର ଖଞ୍ଜା-କବାଟ । ଆଉ କି ଡର, କାହାକୁ ଡର ?'

ବୃଦ୍ଧ ଶର୍ମାଏ ପାକୁଆ ପାଟିରେ ହସିଲେ । ନିଜକୁ ନିଜେ ନୀରବ ଭଷାରେ କହିଲେ, ନିର୍ବୋଧ ଝିଅଟା ଜାଣେ ନାହିଁ ଯେ ମଣିଷର ଗୋଟାଏ ଅସନା ଶକ୍ତିଶାଳୀ ଅଣବାହୁଡ଼ା ଅସ୍ତ୍ର ଅଛି, ଲୁଚିରହିଛି ରସନାରେ । ସେ ଯଦି ଇଚ୍ଛେ ଅମୃତ ବିତରଣ କରେ, ନୋହିଲେ ବିଷ ଉଦ୍‌ଗାରେ, ସତ୍ୟ ରୂପ କରିବାକୁ ଆହୁରି ଆହୁରି ମିଥ୍ୟାର ଆଶ୍ରୟ ନିଏ ।

ଏ ସବୁକୁ ଆଲୋଚନା କରି ମୂକ ନିଷ୍କ୍ରିୟ ହେଲେ ଚଳିବ ? କର୍ମଟି ଆଗ ନା ପରି ।ମଟି ଆଗ ? ରୁଗ୍‌ଣର ସେବା କରିବା ସର୍ବାଦୌ କର୍ତ୍ତବ୍ୟ । ଅନ୍ୟ ବିଗ୍ଦର ପରେ ।

ପାର୍ବତୀକୁ ପାଖକୁ ଡାକି ସେ କହିଲେ, 'ନିରଶ୍ରୟ ପିଲାଟିର ସେବା କରି ତାକୁ ସୁସ୍ଥ ସବଳ କରିବାକୁ ହେବ । ଲୋକଙ୍କର ପରୋକ୍ଷରେ ଅସନା ଅଭଦ୍ର ଆଲୋଚନାରେ କାନ ପାତିବାକୁ ହେବ ନାହିଁ । ମୁହଁ ଉପରେ ଆଲୋଚନା କଲେ, କର୍ଣ୍ଣପାତ ନ କରି ବିଦାୟ ନେବା ଭଲ, ମା !

ପାର୍ବତୀ ସମ୍ମତ ହେଲା । ପୁଣି କହିଲା, 'ଦୁନିଆର କଥା ତ ତମେ ଜାଣ । ବୋଉଲୋ, ପେଟରୁ ଜନମ ଲଭି ମୁଁ ତତେ କେଉଁ କଥା କହିବି, ବାପାଙ୍କୁ ଅବା କହିବି ? ପିତା ଯେ ସରଗଠାରୁ ବଳି ବଡ଼ ଉଦାର, ତୁ ମୋ ମା' ସହଣି ପଣରେ ଧରଣୀଠାରୁ ଅଧିକ । ଘଟଶାଳୀରେ ପଢ଼ିଲାବେଳେ ଏହା ଶିଖିଥିଲି । ମୋ'ର ନିଉଁଛୁଣା ଜୀବନରେ ସେତକ ମୁଁ ନିଶ୍ଚୟ ଉପଲବ୍ଧି କରିବି ବୋଲି ମୋର ଦୃଢ଼ ବିଶ୍ୱାସ । ପରିଣାମ ମୋ'ର ଯାହା ହେଉ, ଦୁନିଆ ଯାହା କହୁଥାଉ ।'

ଶର୍ମାଏ ଓ ତାଙ୍କର ପତ୍ନୀ ସାବିତ୍ରୀ ସମ୍ମତ ହେଲେ । କେତେଦିନ ଯାଏ ଶର୍ମାଏ ପାର୍ବତୀ ସଙ୍ଗରେ କୁବେର ଘରେ ରହିଲେ ଘଡି ଅଧଯାଏ । ଔଷଧ ଦେଲେ, ବିଛଣାରୁ ଉଠାଇ ପଦାକୁ ନେଲେ; କିନ୍ତୁ ଦ୍ୱିଧାରେ ମଧ୍ୟ ପଡ଼ିଲେ । ଘରେ ସାବିତ୍ରୀ ବିଛଣାରେ ପଡ଼ି ଛଟପଟ ହେଉଛନ୍ତି । ଘଡି ଅଧରେ ଏକାକୀ ତାଙ୍କ ପାଖକୁ ଧାଇଁଯାଇ ଖବର ବୁଝିବାକୁ ମନ ଉଚ୍ଛନ୍ନ ହେଉଛି । ରୋଗଶଯ୍ୟା ଉପରେ ଛଟପଟ ହେଉଣୁ ସେ ପଚାରିବେ, 'କାହିଁକି ଝିଅଟା ହାତରେ ରୋଗଣା ପିଲାର ଦାୟିତ୍ୱ ଦେଇ ଧାଇଁଆସିଲ ଗୋ, ଅଧର୍ମ ହେବ । ମୁଁ ତ ରୋଗରେ ଘାଣ୍ଟିହେଲେ ସହିପାରିବି । ଦେହସହା ହେଲଣି । ମୋ'ର ହାଡ଼ ମାଉଁସରେ ସୁଖଦୁଃଖ, ଭୋଗ ଯନ୍ତ୍ରଣା ଜରିଗଲାଣି । ସେହି ହତଭାଗ୍ୟ ଟୋକାଟା କ'ଣ ବା ସହିଛି ? କାହିଁକି ଆଇଲ ? ଫେରିଯାଅ ।

ଫେରିଯିବି ?

ନ ଗଲେ ଝିଅଟା କ'ଣ ପିଲାର ସେବା କରିପାରିବ ? ଶର୍ମାଙ୍କ ମନରେ ଏହିପରି କେତେ ପ୍ରଶ୍ନ ଓ ଉତ୍ତର । ତୁଣ୍ଡ ଖୋଲିଲେ ନାହିଁ । କିଛି ପଚାରିଲେ ନାହିଁ । କୁବେରର ଜାମା ତଳେ ହାତ ଗଳାଇ ଦେହର ତାତି ପରଖିଲେ । ନାଡ଼ି ଦେଖିଲେ । ପାର୍ବତୀକୁ ପାଖକୁ ଡାକିଲେ । ଆସନ୍ତେ

କହିଲେ, 'ଜ୍ୱର ପ୍ରବଳ ଅଛି, ମା, ପାଖ ଛାଡ଼ିଯିବା ଉଚିତ ନୁହେ । ଗତିରେ ଦୁଇଥର ସେହି ଗୁଣ୍ଡ ଅନୁପାନ ପ୍ରକାରେ ଛଅ ଘଣ୍ଟା ଅନ୍ତରରେ ଦେବୁ । ହେଳା କରିବୁ ନାହିଁ । ପାଖରେ ରହିବାକୁ ତୋତେ ସାହାଯ୍ୟ କରିବାକୁ କାହାକୁ ପଠାଇବି । ସେ ଯାହା ନେବାର ନେଉ, ଆମେ ଦେବା ।

ପାର୍ବତୀ କହିଲା, କିଛି ଲୋଡ଼ା ନାହିଁ, ନନା ! ଯେ ଆସିବ, ରହିବ; ସବୁ ଠଉର କରିବ । କେଉଁଠି କ'ଣ ଅଛି ଜାଣିବ । ବୁଲା କୁକୁର ପାଖେ ଗଡଘସ ହୋଇ ତା'ର ପିଠି ଆଉଁସି ତାକୁ ନିଜେ ଗାଧୋଉ, ଖୋଇ ଆପଣାର କରିବ । ସେଇଠୁ ବାଗ ଉଣ୍ଡି ଦିନେ କୁବେର ଘରେ କଳାକନା ବୁଲାଇଦେବ, ନନା ! ତା'ର ଧନ ସେ ଇନ୍ଦ୍ରରଜାଙ୍କର ସମ୍ପତ୍ତି କୁବେର ରଖିଲାପରି ରଖିଛି । କ'ଣ କରିବ ସେ ଜାଣେ । ତା' ଉପରେ ଆମର ଆଖି ପଡ଼ିବା, ଆମର ଆଶା ବଢ଼ିବା ଅବିଧି, ନନା !

ଝିଅର ଶୁଭବୁଦ୍ଧି ଦେଖି ଶର୍ମା ସନ୍ତୁଷ୍ଟ ହେଲେ । ସାବିତ୍ରୀଙ୍କୁ ବୁଝାଇ କହନ୍ତେ ସେ କେବଳ ନୀରବ ରହିଲେ । ପ୍ରକୃତରେ କନ୍ୟାର ମନରେ କଣ ଅଛି ଅବା ଭବିଷ୍ୟତରେ କ'ଣ ପଶିବ, କେଉଁ ପିଶାଚ ତାକୁ ଗ୍ରାସିବ, ସେ କିପରି ଜାଣିବ ? ନିଜେ ପାର୍ବତୀ କ'ଣ ଜାଣିଛି ? ସାମୟିକ ଉତ୍ତେଜନାର ମୂର୍ଚ୍ଛନାରେ ତା' ବୟସର ଝିଅ କେତେବେଳେ କ'ଣ କହିପକାଇବ । କିନ୍ତୁ ବୟସର ତୋଡ଼ ଜୀବନର ପ୍ରବାହକୁ କେଉଁଆଡ଼େ ମୋଡ଼ିବ ଏକଥା ତ କହି ହେବ ନାହିଁ !

ସବୁ ଦୁଷ୍ଚିନ୍ତା ସତ୍ତ୍ୱେ ସାବିତ୍ରୀ କନ୍ୟାକୁ କିଛି କହିପାରିଲେ ନାହିଁ । ବାରଣ ନ ମାନି ତା'ର ବାପେ ତ ଧର୍ମାତ୍ମା ସାଜିବେ ବୋଲି ଅଜ୍ଞାନ ପିଲଟାକୁ ବିପତ୍ନୀକ ଗେରଣା ଦରବୁଢ଼ା ହାତରେ ଟେକିଦେଇଥିଲେ । ଧନ ଆଣି କିଛି ଛୋଟ ଜମି ଖଣ୍ଡିଏ କିଣିବାରେ ଖର୍ଚ୍ଚ କଲେ ଯେ ସେ ଜମିଟି ଟାଙ୍ଗରିଆ । ବାକିତକ ଅଫିମ ପୋଡ଼ି ଧୂଆଁ ଶୋଷିବାରେ ଶେଷ । ତା'ସଙ୍ଗକୁ ପୈତୃକ ସମ୍ପତ୍ତିରୁ ଅଧେ । ପଚାରିଲାରୁ କହନ୍ତି, ତ୍ରିକୂଟରେ ଲୟ ଲଗାଇ ବ୍ରହ୍ମ-ଜ୍ୟୋତି-ଦର୍ଶନ କରିବାକୁ ଏହା ଲୋଡ଼ା । ଗଞ୍ଜିକାର ଧୂମ ପାନ କରି ଜ୍ୟୋତି ଦର୍ଶନ କରିବା ଅପେକ୍ଷା ଅହିଫେନ ବୋଇଲେ ଅଫିମ ସେବନ କରି ଜ୍ୟୋତି ଦର୍ଶନ କରି ମୁକ୍ତି ଲଭିବା ଭଲ ।

ସେ ସାବିତ୍ରୀ ଯଦି ଲଗୁଡ଼ ବୋଇଲେ ଠେଙ୍ଗାଧାରିଣୀ ହୋଇ ଦୁର୍ଗା-ମୂର୍ତ୍ତି ଧାରଣ କରି ନ ଥାନ୍ତେ, ଯେତକ ଅଛି ସେତକ ମଧ୍ୟ ସନମାନ ଦି'କଡ଼ା ହୋଇଥାନ୍ତା । ଲୋକେ ଦୁର୍ନାମର ଡମ୍ବରୁ ଘରିଆଡ଼େ ବଜାଇଥାନ୍ତେ । ବରଂ ନିଃସାହା ପିଲାକୁ ସାହା ହୋଇ ତା'ର ପ୍ରାଣ ବଞ୍ଚାଇଛି ବୋଲି ଅନ୍ୟଙ୍କ ଆଗରେ ତା'ର ସେବିକା ରୀତିର ପ୍ରଶଂସା କରୁଥିଲେ । ପାର୍ବତୀ ଅତି ଉଦାର ମତିର ଝିଅ ବୋଲି ଉପରେ ପଡ଼ି ବଡ଼ତି କରୁଥିଲେ । କହୁଥିଲେ, କେଉଁ ଜନ୍ମରେ କି କି ପାପ କରିଥିଲା ବୋଲି ସିନା ଏ ଜନ୍ମରେ ବାଲ୍ୟ କାଳରୁ ବୈଧବ୍ୟ ଦଣ୍ଡ ଭୋଗିଲା, ନୋହିଲେ ତା'ମନଟି ଅତି କୋମଳ । ପରର ଦୁଃଖ କଷ୍ଟ ସେ ସହିପାରେ ନାହିଁ । ସେହି ଗୁଣରୁ ଅତି ତରକା କୁବେର ବେହେଗ ଟୋକାକୁ ଜାଣ ସେ କିଣି ନେଇଛି ଗୋ ! କୁବେର ଗ୍ଭବି ପେଛାଟି ପାର୍ବତୀ ଯେତେ ପ୍ରତିବାଦ କରି ନାହିଁ କରୁଣୁ କଥା ନ ମାନି ତା' ହାତରେ ଗେଞ୍ଜି-ଦେଇ କହିଲା, 'ନାନୀ ଗୋ, ମୋର କେହି ନାହିଁ; ମୋର ଧନ ଅଛି, ପୁଣି ଧନ ଆସୁଛି, ଆସିବ । କ'ଣ ହେବ ? ତୁ ଆଉଥରେ କେଉଁଠି ସଂସାର କର । ମୁଁ ଧନ ଦେବି । ତୋ ପାଇଁ ସେ ପାତ୍ରକୁ କିଣେଇଁଦେବି । ତୋ'ନନା ମଙ୍ଗିଲେ ହେଲା ।

ମନେ ପଡ଼ୁଛି ସାବିତ୍ରୀଙ୍କର, ସେହି ଟୋକାଟି ନିଜେ ଦିନେ ତାଙ୍କୁ କହୁଥିଲା, 'କିଛି ମନେ କରିବ ନାହିଁ, ମା, ଆଜିକାଲି ତ ଚଳିଲାଣି, ଶୁଣିଛି କେତେ ଜାଗାରେ ହେଲଣି, କେଉଁଠି ଭଲ ପାତ୍ର ଦେଖି ପାର୍ବତୀ ନାନୀକୁ ନିଶ୍ଚୟ ବାହା କରଅ । ଯେତେ ଧନ ସେ ଲୋଡ଼ୁଛି ତାକୁ ଦେବାକୁ ରାଜି ହୁଅ । ମୁଁ ଦେବି, ସବୁ ଦେବି । ମୋ ଚଳିବାକୁ ଅସୁବିଧା ହେବ ନାହିଁ ।

ପାର୍ବତୀ ନାନୀ ପର ମତେ ଯମପୁରରୁ ବାହୁଡ଼ାଇ ଆଣିଛନ୍ତି ! ତାଙ୍କୁ ଅଦେୟ ମୋ'ର କିଛି ନାହିଁ ବୋଲି ମୁଁ ମଣେ । ତେଣୁ କହିଲି । ସାବିତ୍ରୀ କହିଲେ, ପୁଣ ତତେ ମୁଁ କହୁଛି ସେ ତା'ର କର୍ତ୍ତବ୍ୟ କରିଛି; ତଥାପି ତୋ'ର କଥା ମୋ'ର ମନେ ରହିଲା । ଯେବେ ମୋ'ର ଲୋଡ଼ା ହେବ, ମୁଁ ଅବଶ୍ୟ ତୋ' ଠାରୁ ମାଗିନେବି । କ'ଣ ଲୋଡ଼ା, କେତେ ଲୋଡ଼ା ଅବା କେବେ ଲୋଡ଼ା, ଏବହୁଁ କହିପାରିବି ନାହିଁ ।

କୁବେର ସାବିତ୍ରୀଙ୍କର ପଦଧୂଳି ନେଇ ବିଦାୟ ନେଲା । ଯାହା କହିବାର ସେ କହିସାରିଛି । ଯେଉଁ ପାର୍ବତୀ ନାନୀ ଜୀବନମୂର୍ତ୍ତି ପରିଶ୍ରମ

କରି ଉନ୍ନିଦ୍ର ରହି ଭୋଜନ ଶୟନ ଭୁଲି ତା'ର ସେବା କରି ତାକୁ ନୂଆ ଜୀବନ ଦେଲା, ତା'ର ଜୀବନକୁ ସୁଖମୟ କରିବାକୁ ତା'ର ଉଦ୍ୟମ ବ୍ୟର୍ଥ ହୋଇଛି । ଜନମଦାୟିନୀ ଜନନୀ ଯାହାକୁ ସମାଜର କଠୋର ନିୟମ ଭଙ୍ଗ ଭୟରେ ନିର୍ମମ ହେଲେ ଆଉ କିଏ ତା'ର ଜୀବନ-ରକ୍ଷାକାରିଣୀର ସାହା ହେବ ? ଧନ ବ୍ୟର୍ଥ ହେବ, ହେଲା ତ ! ଜନ ତ ନାହିଁ ।

କୁବେର କହିଲା ପାର୍ବତୀକୁ, ତା'ର ଫେରିଲା ବାଟରେ ଗହୀର ବିଲ ମଝିର ଅଧଦଣ୍ଡା ବାଟରେ ଗୋଟିଏ ବାଟ କଡ଼ର କଦମ୍ବ ଗଛ ମୂଳରେ, ଯାହା ପାଖରେ ପଥର ପାହାଚ ବନ୍ଧା ଛୋଟ ପଦ୍ମଲଟାଭରା ପୋଖରୀଟିଏ ଅଛି ସେଇଠି, 'ନାନୀ ମ, ମଣିଷ ଧନ ସଂଚେ, ସମ୍ପତ୍ତି ବାଢ଼ି କରେ ତା'ର ପୁଅ-ନାତିଙ୍କ ପାଇଁ । ମୋ'ର ତ ଗୋଟାଏ ପେଟ; ମୋ'ର ଧନ କ'ଣ ହେବ ?'

"ବାପା ଓ ମା ଦୁଃଖ ସହି ସଞ୍ଚୁଛନ୍ତି ମୋ'ର ଭବିଷ୍ୟତ ପାଇଁ । ସେମାନେ ନିର୍ବୋଧ ନୁହନ୍ତି କି କୁବେର ? ମୋର ପୁଣି ଗୋଟାଏ ଭବିଷ୍ୟତ କ'ଣ ? ସମସ୍ତେ ଜାଣନ୍ତି, କାଲି ଯାହା ଥିଲା, ଆଜି ସେଇଆ ଅଛି, ପୁଣି ଆସନ୍ତା କାଲି-ମାନଙ୍କରେ ସେଇଆ ରହିବ ।"

"ମୋର ବି ସେଇଆ ରହିବ ଗୋ ପାର୍ବତୀ ନାନୀ, ଆଜି ଯାହା ଅଛି, କାଲି ସେଇଆ ରହିବ, ପୁଣି ପଅରଦିନ । ଧନ ଅବା ଗହଣାଗାଣ୍ଠି ସୁନା ରୁପା, ଜମିବାଡ଼ିର ବନ୍ଧକ କବଲା । ସୁଧ ଆସୁଥିବ । ଘରେ ବସି ରୋଜଗାର । ଅରକ୍ଷିତକୁ ଦଇବ ସାହା ବୋଲି କଥନ ଅଛି । ମୋ'ର ଏକା ସେହି ଭରସା, ସାହା ଏକା ତୁଇ, ପାର୍ବତୀ ନାନୀ ! କିନ୍ତୁ ମୁଁ ତ ଭଲ ହୋଇ-ଗଲିଣି, ତୁ କ'ଣ ଆଉ ମୋ' ପାଖରେ ରାତିରେ ରହିବୁ ? ସେମାନେ ରଖାଇ-ଦେବେ ନାହିଁ । ବାର ନିନ୍ଦାମିନ୍ଦା କରି ସେମାନେ ଗପିବେ । ଦୁର୍ନାମ ଡରରେ ଏମିତି ତୁ ସବୁଦିନେ ଗ୍ଳଲିଯାଉଥିବୁ ।

"ପାର୍ବତୀ ନାନୀ, ମୁଁ ସମ୍ପୂର୍ଣ୍ଣ ଆରୋଗ୍ୟ ହେଲିଣି । ତୋ' ବାପାଙ୍କ ଔଷଧର ଗୁଣ । ସଞ୍ଜ ହେଉଣୁ ନ ହେଉଣୁ ତୁ ମୋ'ପାଇଁ ମୁଠାଏ ଫୁଟାଇଦେଇ ଯିବୁ । ମୁଁ ହାତରେ ବାଢ଼ିଖାଇବି । ବୁଲୁ ତ ଘର ଜଗିବ । ହତସତିଆ, ମିଛଟାରେ ଜିଗତଟା ଗାଁ ଟୋକାଏ ଅବା ଦରବୁଢ଼ାଏ ଯଦି ଟେକା ପଥର ବୃଷ୍ଟି କରିବେ ତ ବୁଲୁ କୁକୁର ତାଙ୍କୁ ପୁଳାଏ ପୁଳାଏ ଦେବ, ଇଞ୍ଜେକ୍ସନ୍

ନେବାକୁ ବଡ଼ ସହରକୁ ପଠାଇବ । ବଡ଼ ଡାକ୍ତରଖାନାର ବରଣ୍ଡାରେ କିନା-କେତେ ପଡ଼ି ଇଞ୍ଜେକ୍ସନ୍ ନେବେ । ଓହୋ, ଦିନେ ନୁହେଁ କେତେ ଦିନ; ଜୀବନ-ଯନ୍ତ୍ରଣା; ବୁଝ ମନେ ପଡ଼ୁଥିବ ।"

ମନକୁ ମନ କୁବେର କୁରୁଳି ଉଠିଲା । ପାର୍ବତୀକୁ କହିଲା, "ସେ ହତସତିଆ ଗାଁ ଭେଣ୍ଡିଆଏ ଯେଉଁମାନେ ତୋ' ପୀରତି ପିଇବାକୁ କଲବଲ, ସେହିମାନେ ବିମୁଖ ହୋଇ ହତାଶ ହୋଇ ଏବେ ଟେକାପଥରର ଆଶ୍ରା ନେଉଛନ୍ତି ।"

"ତାର ସମାଧାନ ତ ଭଗବାନ କରିସାରିଚନ୍ତି । ତମକୁ ମୁଁ ଜଣାଇଁ ନାହିଁ; କିନ୍ତୁ ଗୁପ୍ତରେ ମୁଁ ମୋ ବୋଉକୁ ଜଣାଇ ଦେଇଛି ।"

× × × ×

ସାବିତ୍ରୀ କ୍ଷଣେ ଚିନ୍ତିତ ହେଲେ । ଭାବୁଥିଲେ, ଯାହା ସେ ଅନୁମାନ କରୁଥିଲେ ତାହା ସତ୍ୟ ହୋଇଛି । ପାର୍ବତୀର ନାରୀ ଜନମ ହୁଏତ ସାର୍ଥକ ହେବାକୁ ଯାଉଛି । ତାର ଡରଡର ଆନନ୍ଦମୟ ଜୀବନ । ସାବିତ୍ରୀ ନିଜେ ତାକୁ କିପରି ଗ୍ରହଣ କରିବେ, ତା'ରି ଉପରେ ପାର୍ବତୀର ଥରଥର ହୋଇ ଥରିଲା ଜୀବନ-ଦୀପର ସ୍ଥିତି ଅବା ଭୟାପମାନର ଝଞ୍ଜା ପବନରେ ନିର୍ବାପନ ନିର୍ଭର କରେ । ସେ କହିଲେ, "ମା ପାର୍ବତୀ, କୁବେର ମହାଜନ ଯଦି ସମ୍ମତ ହୁଏ, ପୁଅ ହେଉ କି ଝିଅ ହେଉ ତୋ'ର ସେହି ସନ୍ତାନଟିକୁ ଫୁଲନାଢ଼ କରି ମୁଁ ଟେକିନେବି ତୋ' ହାତରୁ । ତୋ' ପେଟର ଛୁଆ ଦିନେ ତୋ'ର ଭାଇ କି ଭଉଣୀ ହେବ । ଯିଏ ଯାହା କହୁଥିବାର କହୁଥାନ୍ତୁ ।

"ଗ୍ରାମ ଲୋକେ, ବୋଇଲେ ସାଇ ଭାଇ, ଏ ଘଟଣାର ସୁରକ୍ ପାଇଲେ ନାହିଁ । କେଉଁ ନିର୍ବୋଧର ଗରଜ୍ ବଳେଇଛି ସେ ନାକରେ ବିନା କାରଣରେ ପାଉପର ଗେଞ୍ଜି ଛିଙ୍କିବ, ଅନ୍ୟମାନଙ୍କର କେଉଁ ଅନୁକୂଳ ଯାତ୍ରା ବିଗାଡ଼ି ଦି'ପଦ ଶୋଧନ ଶ୍ରବଣ କରିବ !"

ଜନ୍ମଦାତ୍ରୀ ସାବିତ୍ରୀଙ୍କର ଉପଦେଶ ପାର୍ବତୀ ଶୁଣି ନିଶ୍ଚିନ୍ତ ହେଲା । ମଣିଲା, ବୁଡ଼ିବୁଡ଼ି ପାଣି ପିଇ କେହି ଜାଣିବେ ନାହିଁ ମଣିଲା ଲୋକ ଜଣାପଡ଼ି, ମାତାଙ୍କ ଉତ୍ସାହ ବାଣୀ ଶୁଣି ଉତ୍ଫୁଲ୍ଲ ହୋଇ ଚିନ୍ତିତ କୁବେରକୁ କହିଲା, "ତୋ'ର

ପିଲା ତୋ'ର । ମୁଁ ପାଳିବି । ଭଲମନ୍ଦ କଥା ମୁଁ ବୁଝିବି । ଧନ ରୋଜଗାର କଥା ତମେ ବୁଝ ।"

ସତେ କି ପାର୍ବତୀ ତା'ର ବେଦିରେ ବସି ବାହାହେଲା ଘରଣୀ ! ମନ୍ତ୍ର ପଢ଼ା ହୋଇଛି, ହାତଗଣ୍ଠି ପଡ଼ିଛି, ଶଙ୍ଖ ମହୁରୀ ବାଇଦ ବାଜଣା ବାଜିଛି, ବାଣ ଫୁଟିଛି ! କିନ୍ତୁ ନା, ଏଠି ଓଲଟ ବେଭାର । ପାର୍ବତୀ ବର, ସେ କୁବେର କନିଆ । ଓଲଟା ଯୁଗ ।

ହସି ହସି କୁବେର ହାତ ଯୋଡ଼ିଲା । କହିଲା, "ହଉ ପାର୍ବତୀ ନାନୀ, ସବୁ କଥାରେ ମୁଁ ତମର ବୋଲ ମାନିବି, କନିଆ ଯେମିତି ବରର ବୋଲ ମାନେ । କିନ୍ତୁ ବଣିଜ ବେପାର କାରବାରରେ ମୋ କାମରେ ତମେ ହସ୍ତକ୍ଷେପ କରିବ ନାହିଁ । କ'ଣ କି, ଆମ ବଣିଜ ବେପାରରେ ଭାବପ୍ରବଣତା ନ ଥାଏ । ପ୍ରିୟା-ପ୍ରୀତି ତୋଷଣ, ମୁହଁ ମୁଲାଇଜା ନଥାଏ । ଅସାବଧାନ ହେଲେ ପ୍ରିୟାପ୍ରୀତି ତୋଷଣରେ ଭେଳା ବୁଡ଼ିବ । ମୂଳଦ୍ଧ ଯିବ । ପ୍ରିୟାପ୍ରୀତିଆ କୁଆଡ଼େ ଛୁ । ବାକିଆ ବି ଆଦାୟ ନ ହୁଏ ।

"ତେଣୁ ଗୋ ପାର୍ବତୀ ନାନୀ, ମୋ' ବେପାରରେ କେବେ ବାଧା ଦେବ ନାହିଁ । ଲକ୍ଷ୍ମୀ ଛାଡ଼ି ପଳାଇବେ । କେତେ ସନ୍ତାନ ତମେ ମତେ ଦେଉଛ ଦିଅ, ସେମାନଙ୍କୁ ମଣିଷ କର, ମୁଁ ଧନ ଦେବି ।"

× × × ×

ପୌରାଣିକ ଯୁଗମାନଙ୍କୁ ଦୃଷ୍ଟି ଫେରାଇଲେ ଚିନ୍ତାର ଆଗକୁ ଆସନ୍ତି ପ୍ରଥମେ ମହାସତୀ ସୀତା, ଯିଏ ଜନକଙ୍କର ଦୁଲାଳୀ ଥିଲେ । ଆଦର୍ଶ ପତ୍ନୀ ରୂପେ ସେ ହିନ୍ଦୁ ନାରୀର ଆଦର୍ଶ ଓ ଅନୁକରଣୀୟା । ହିନ୍ଦୁ ପତ୍ନୀ ତାହାହିଁ ଜାଣେ ଓ ମାତା ସୀତାଙ୍କୁ ଆଦର୍ଶ ବୋଲି ଗ୍ରହଣ କରେ ।

ସୀତା ଭଗବାନ୍ ଶ୍ରୀରାମଙ୍କଠାରୁ କେତେ ଯେ ବର୍ଷ ବଡ଼ ତାହା କଳନା କରାଯାଇ ପାରୁନାହିଁ । ଗୋଟିଏ ପାତ୍ର ଭିତରେ ସେ ଘୋଡ଼ିଂଆ ହୋଇ ରହିଥିଲେ । ଉପର ଭୂମିରେ ଚାଷ ହେଉଥିଲା ଓ ଫସଲ କରାହେଉଥିଲା । ବୋଧହୁଏ ଭୂମିଟିର ଅନୁର୍ବର ଅଂଶର ତଳେ ପୋତା ହୋଇଥିବାରୁ ସେପାଖ ଜମିକୁ ଲୋକେ ଚାଷ କରୁ ନଥିଲେ ।

କିନ୍ତୁ, ଜନକ ସେହି ଅଂଶକୁ ମଧ୍ୟ ଚର୍ଷିବାକୁ ଆଗ୍ରହୀ ହେଲେ । ସେହି ଭୂମିଖଣ୍ଡି ତ ଗଙ୍ଗାନଦୀର ତଟଦେଶରେ ଥିଲା । ଅଳ୍ପ ଦୂରରେ ଗୋଟିଏ ଭଙ୍ଗା ମନ୍ଦିର ବି ଥିଲା । ସେହି ଭୂମି ଚଷ କରୁଥିବା ବେଳେ ଲଙ୍ଗଳର ମୁନ ବାଜିଲା ଗୋଟିଏ ସୁବର୍ଣ୍ଣ ଘଣ୍ଟର ଘୋଡ଼ଣୀରେ । ସେହି ଘଣ୍ଟ ମଧ୍ୟରୁ ଜନକ ବିଜୁଳିପରି ଝଟକିଲା ଛୋଟ କନ୍ୟାକୁ ଲାଭ କଲେ । ସେ କନ୍ୟାକୁ ସେ ନିଜର କନ୍ୟାରୂପେ ପାଳନ କଲେ । ବିଜୁଳିପରି ସେ ଝଟକୁଥିଲା । କେତେ ବର୍ଷ ସେ ସେହି ଘଣ୍ଟ ଭିତରେ ଅମୃତ ପାନ କରି ଅମରତ୍ୱ ଲାଭ କରି ରହିଥିଲା, କିଏ କହିବ ସେ ତ ମାନବକନ୍ୟା ବା ଦାନବକନ୍ୟା ହୋଇ ନଥିବ । ନିଶ୍ଚୟ ସେ ଦେବ କନ୍ୟା । ପାଳନ କରିବାକୁ ତାଙ୍କୁ ହିଁ ସେ ଅର୍ପଣ କରିଛନ୍ତି । ନୋହିଲେ ଏଠାକୁ କାହିଁକି ତାଙ୍କୁ ଆସିବାକୁ ମନରେ ପଶି ନିର୍ଦ୍ଦେଶ ଦିଅନ୍ତେ ! ଭଗବାନଙ୍କର ଇଚ୍ଛା, ତାଙ୍କରି ନିର୍ଦ୍ଦେଶ । ଲଙ୍ଗଳ ସିଆରହିଁ ତାକୁ ଆବିଷ୍କାର କଲା । ତେଣୁ ତାର ନାମ ଦିଆଯିବ ସୀତା ।

ବହୁବର୍ଷ ପରେ ଭଗବାନ ଶ୍ରୀ ରାମଚନ୍ଦ୍ର ଶିବଧନୁ ଭଙ୍ଗକରି ଜନକ-ନନ୍ଦିନୀ ସୀତାଙ୍କୁ ବିବାହ କଲେ । ସବୁ ଚଳେ ଏଇ ଦୁନିଆରେ କେଉଁଠିନା କେଉଁଠି । ଚଳାଇନେଲେ ହେଲା । ରାମନାମ ତଥା ସୀତାଙ୍କ ନାମ ଜପି ଭକ୍ତ-ମାନେ ତନ୍ମୟ ହୁଅନ୍ତି, କୁଆଡ଼େ ମଣିଷ ଜନ୍ମରୁ ମୁକ୍ତି ଲାଭ କରନ୍ତି । ସେମାନଙ୍କର ଗତିମୁକ୍ତି ହୁଏ । ଅବିଶ୍ୱାସ କରିବାର କାରଣ ନାହିଁ । ବିଶ୍ୱାସରେ ହିଁ ଭଗବାନ ମିଳନ୍ତି; ଯାହାର ବିଶ୍ୱାସ ନାହିଁ ତାକୁ ବା ମିଳିବେ କିପରି ? ଭକ୍ତମାନଙ୍କର ଏପରି ବିଶ୍ୱାସ ।

ରାଧାକୃଷ୍ଣ ନାମ ଜପିଲେ ମଧ୍ୟ ଗତିମୁକ୍ତି ମିଳେ । ରାଧା ଯେ ଶ୍ରୀକୃଷ୍ଣଙ୍କର ମାଇଁ । ବୟସର ତାରତମ୍ୟ ତ ଯଥେଷ୍ଟ । ରାଧାଙ୍କ କୋଳର କାଖର ଭଣଜା । କିନ୍ତୁ କେତେ ରହସ୍ୟ, ଯମୁନା ନଦୀର ତୀର, କଦମ୍ବ ଗଛର ମୂଳ, କାଳିନ୍ଦୀଦହର ଜଳ, କୁଞ୍ଜଲତାର ଦୋଳି, ବସ୍ତ୍ରହରଣ ଇତ୍ୟାଦି । ସେ ଭଗବାନଙ୍କର ଅବତାର ରୂପେ ସବୁ ଦୋଷ ଖଣ୍ଡନ ତ; ସ୍ୱର୍ଗଲାଭ ସୁନିଶ୍ଚିତ ।

ପାର୍ବତୀ ବା କେତେ ବର୍ଷ କୁବେରଠାରୁ ବଡ଼ ?

ମୋଟେ ଦିଓଟି ବର୍ଷ ।

ବଡ଼ଘରମାନଙ୍କରେ ଅଭିଆଡ଼ୀ ଝିଅମାନଙ୍କର ବୟସ ଷୋହଳ ପୂରି ସତର କିମ୍ବା ସ୍ଥଳବିଶେଷରେ କଦବା କ୍ୱଚିତ୍ ଅଠର ପୂରି ଊଣେଇଶ ଚାଲିଥାଏ । ପରଘରୀ ନ ହେବାଯାଏ ଷଠୀ ଠାକୁରାଣୀ ହାଲିଆ ହୋଇ ସେଇଠି ଶୋଇପଡ଼େ । ନିଦ ଭଙ୍ଗେ ପରଘରୀ ହେବାପାଇଁ ବେଦିକା ଉପରେ ବସିବାକୁ ଗଲାବେଳେ; ଶଙ୍ଖ, ମହୁରୀ ଓ ବାଇଦ-ବାଜଣାର ଶବଦରେ-ଝିଅଟିକୁ ଆଉ କେତେଦିନ ଗେଲବସରିଆ କରି ରଖନ୍ତେ ? ଗତ ମାସରେ ଅଠର ପୂରି ଊଣେଇଶ ଚାଲିଲା ବେଳେ ଠାକୁରାଣୀଙ୍କ ପାଖରେ କ'ଣ ମାନସିକ କରାହୋଇଥିଲା ବୋଲି ଗ୍ରାମ ଦେବତାଙ୍କ ପାଖରେ ତା' ମା ଭୋଗରାଗ କରି ଏକାଠି ହୋଇଥିବା ସମସ୍ତଙ୍କୁ ପ୍ରସାଦ ବଣ୍ଟାଇଥିଲେ । ଝିଅପରି ଝିଅ ଖଣ୍ଡେ ତ, କୋଟିକେ ଗୋଟିଏ ।

ଝିଅର ବୟସ କିନ୍ତୁ ମୋଟେ ଏକୋଇଶ ହୋଇଥିଲା । ଏତକ ଭିତିରି ଖବର କାନରୁ ତୁଣ୍ଡ, ତୁଣ୍ଡରୁ କାନ ହୋଇ ପ୍ରଚାରିତ ହୁଏ । ସମସ୍ତେ କାଳକ୍ରମେ ଜାଣନ୍ତି, କିନ୍ତୁ କହିଲା ବେଳେ ରାଣ ନିୟମ ଦେଇ, ଅନୁରୋଧ କରନ୍ତି-ତମେ ଜାଣିଲ, ଆଉ କାହାକୁ କହିବ ନାହିଁ । କି ମିଳିବ ଆମକୁ ପରଘରର ଭଲମନ୍ଦ ଚର୍ଚ୍ଚାରୁ, ନିଜର ଧନ୍ଦା ତ ବଳେଇଛି । ସମାଧାନ କରିବାକୁ ତର ନାହିଁ; ଆଗ୍ରହ ନାହିଁ । ଏ ସଂସାର ଏମିତି ସ୍ୱାର୍ଥପର ।

ପାର୍ବତୀ ଦୃଢ଼ସଂକଳ୍ପ ହେଲା । ବିଚାରିଲା, ଯାହା ମୁଁ ସ୍ଥିର କରିଛି ତାହାହିଁ କରିବି । ଯିଏ ମୋର ଜୀବନଦାତା, ଆଶ୍ରୟଦାତା, ରକ୍ଷାକର୍ତ୍ତା, ମୋ' ଉପରେ ଯାହାର ପୂର୍ଣ୍ଣ ଆସ୍ଥା ରହିଛି, ସେହି କୁବେର ବେହେରାକୁ ହିଁ ସ୍ୱାମୀ-ରୂପେ ଗ୍ରହଣ କରୁଛି । ଏହାକୁ ଦଶଦିଗପାଳ ସାକ୍ଷୀ । ଆମର କର୍ତ୍ତା ସର୍ବବ୍ୟାପୀ ଆକାଶ ଓ ମାତା ଧରଣୀ, ଯେଉଁମାନେ ସବୁ ଦେଖୁଛନ୍ତି ଓ ସବୁ ଜାଣୁଛନ୍ତି । ସେମାନେ ସମସ୍ତେ ସାକ୍ଷୀ; ଆଉ ପରମେଶ୍ୱର ନାରାୟଣ ଯିଏ କୁବେର ବେହେରାଙ୍କ ଘଟରେ ତଥା ମୋ'ର ଘଟରେ ବିରାଜମାନ ।

ଯୋଡ଼ହସ୍ତ ହୋଇ ପାର୍ବତୀ ତା'ର ଲଲାଟରେ ଲଗାଇ ଅନନ୍ତ ଶୂନ୍ୟ ଆକାଶର ଉଜ୍ଜ୍ୱଳ ନୀଳିମାକୁ ନମସ୍କାର କଲା ।

ସେହିପରି କଲା କୁବେର ବେହେରା ।

ସେମାନଙ୍କର ଶୁଭ ପରିଣୟର ସ୍ମାରକୀ ପାଇଁ ଗ୍ରାମର ବହୁ ଲୋକଙ୍କୁ ବିଶେଷତଃ ଖାତକମାନଙ୍କୁ କୁବେର ନିମନ୍ତ୍ରଣ କଲା । ଘରଘର ବୁଲି କରଯୋଡ଼ି ଜଣାଇଁଲା । ପାଚକ ଓ ପରିବେଷକ ବ୍ରାହ୍ମଣମାନେ । ଜାତିଭେଦ ତ ଉଠିଗଲାଣି ତଥା ବର୍ଣ୍ଣଭେଦ । ତଥାପି କାହାରି ମନରେ କାଳେ ପୂର୍ବ-କାଳିଆ ଭେଦଭାବ ଥିବ ସେଥିପାଇ ତ ବ୍ରାହ୍ମଣ ହେବେ ପାଚକ ଓ ପରିବେଷକ । ଦୟାକରି ଆପଣମାନେ କୁବେରର ନିମନ୍ତ୍ରଣ ରକ୍ଷା କଲେ ମୁଁ ପ୍ରୀତ ହେବି, କୃତଜ୍ଞ ରହିବି ।

ସେମାନେ ଯାଇଥିଲେ । ନିମନ୍ତ୍ରିତ ଦଶକୁ ଉପସ୍ଥିତ ପଚିଶ । ଚତୁର କୁବେରକୁ ଏହି ହାର୍ ଜଣାଥିଲା ପରା; ସେହି ହିସାବରେ ଆୟୋଜନ କରିଥିଲା ସେ । ପ୍ରଶଂସା ସଙ୍ଗକୁ ଦି'ଅକ୍ଷରୀ ଗାଳି ସହିତ ନିନ୍ଦା ବି ସେତିକି । ବେତାଏ ସମାଲୋଚନା, ବ୍ରାହ୍ମଣ ଘରର ବିଧବା ଚରିତ୍ରହୀନା ବୁଢୀଟାକୁ ବାହା ହୋଇ ମହାପାପ ଅରଜି ନରକକୁଣ୍ଡକୁ ସିଧାସଳଖ ଅଗ୍ନିମୟ ବାଟ ଫିଟାଇଛି ବୋଲି ଭର୍ତ୍ସନା-ସୂଚନାମୂଳକ ସମାଲୋଚନା ।

କାଳକ୍ରମେ ସବୁ ଶାନ୍ତ ହୁଏ । ପୂର୍ବାବସ୍ଥା ଫେରିଆସେ । କନ୍ୟା ପାର୍ବତୀର ମରଣ ହୋଇଛି, ବୁଢ଼ାବୁଢ଼ୀ ଦୁହେଁ ନିଶ୍ଚିନ୍ତ ହୋଇଛନ୍ତି ବୋଲି ଲୋକେ ଭାବିଲେ । ସତେ ସେଇଆ । ବିମଳାନନ୍ଦ ଶର୍ମାଙ୍କ ସଙ୍ଗେ, ବାଟରେ ଜଣେ ପରିଚିତ ଅଭାବୀ ଚାଷୀ, ବେକରେ ଯାଉଁଳିବୋଝ ପକାଇ ଯାଉଁଣୁ ଓଳଗି ହୁଅନ୍ତେ ଶର୍ମାଏ କଲ୍ୟାଣ କଲେ ଓ ଅଙ୍ଗଯତ ଡାହାଣ ହାତଟା ଲମ୍ବି-ଆସିଲା, ବିଦାକି ପାଇଁ ଠୋଲଇଲା । ବାଟୋଇ କାନ୍ଧରୁ ଝୁଲୁଥିବା ବଟୁଆରୁ ଦୋଅଣିଟିଏ କାଢ଼ି ଶର୍ମାଙ୍କ ହାତରେ ଦେଲା । ଆହୁରି କେତେପଦ କଲ୍ୟାଣ କରି ପଗ୍ଭରିଲେ, "କୁଆଡୁ ଆଉଲୁରେ ପୁଅ ?"

ଆଗନ୍ତୁକ ପଥିକ କହିଲା, ପଟେ ବଳଦ କିଣିବାକୁ ଟଙ୍କା ନିଅଣ୍ଟ ହେଲା ଯେ, ମୋ' ତିରିଲାଙ୍କ ନୋଥଟା କୁବେର ବେହେରାଙ୍କ ପାଖରେ ବନ୍ଧା ରଖି ଟଙ୍କା ପନ୍ଦରଟି କରଜ ଆଣିବାକୁ ଯାଇଥିଲି । ଟଙ୍କାରେ ମାସକୁ ଦି'ଅଣା ସୁଧ ସେ ଗଢ଼ ହାଙ୍କୁଥିଲା । ପାର୍ବତୀ ନାନୀଙ୍କ ଠେଇଁ ଗୁହାରି କଲି । ତାଙ୍କ ମନ ତଟିଲା । ସିଏ ତମର ଟିକି ନାତୁଣୀକି କୋଡ଼ରେ ଧରି ବସିଥିଲେ । ମୁଁ ତ ଭାବିଲି ମଣିଷଛୁଆ ନୁହେଁ, ସୁନାର ପିତୁଳା । ତାକୁ ଧରିବାକୁ ମନହେଲା । ମାଗିଲାରୁ ପାର୍ବତୀନାନୀ ମତେ ଧରିବାକୁ ଦେଲେ । ଅଚିହ୍ନା ବାଗିଲା ନାହିଁ ।

ପାର୍ବତୀନାନୀ କୁବେରଙ୍କୁ କହି ମୋତେ ଟଙ୍କା ଧାର ଦେଲେ । ଫୁଲୁଗୁଣା ବନ୍ଧା ରଖିଲେ । କ'ଣ ଲେଖାପଢ଼ା କଲେ । ମୋ ଦସ୍ତଖତ୍ ସାଙ୍ଗକୁ ଟିପଚିହ୍ନ ନେଲେ । ପନ୍ଦର ଟଙ୍କା ତ ଦେଲେ, କହିଲେ, 'ମାସକୁ ମାସ ସୁଧଟା ଦେଇଯିବୁ, ମୂଳ ଆଡ଼କୁ ଯଦି କିଛି ଦେଉ, ହାଉଲେ ହାଉଲେ କରଜଟା ଶୁଝିଯିବ ।'

× × × ×

"ମା'ଗୋ, ପାର୍ବତୀ ନାନୀ କଥାରେ ଆଉ ବ୍ୟବହାରରେ ମତେ ତ କିଣିନେଲେ । ସେଭଳିକା ଝିଅର କପାଳ ଦଇବ ପୋଡ଼ି ନ ଥିଲା; ଛୁଆ ବୟସରୁ ଅଜ୍ଞାନ କାଳରୁ ପିତୁଳା ବାହା ପରି ତମେ ବାହା କରଇ ତା' କପାଳ ତମେ ପୋଡ଼ିକି ପାଉଁଶ କରୁଥିଲ । ନିଜର ବୁଦ୍ଧିରେ, ସାହସରେ ସେ ତା'ର ଆତ୍ମରକ୍ଷା କଲା । ଡାକି ବଜାଇ ସେ ତା ସମ୍ମାନ ରଖିଲା ।"

ଝିଅ ପାର୍ବତୀର ଅଧିକ ପ୍ରଶଂସା ଶୁଣିବାକୁ ସାବିତ୍ରୀଙ୍କର ଆଉ ମନ ହେଲା ନାହିଁ । କିନ୍ତୁ ତାଙ୍କର ମା ମନ ଛଟପଟ ହୋଇ ନୀରବ ଭାଷାରେ ତାଙ୍କୁ କହିବାକୁ ଲାଗିଲା, ଆଲେ ବାଇଆଣୀ, ଧାଇଁଯାଇ ଥରେ ତୋ'ର ଟିକି ନାତୁଣୀକୁ ଗ୍ହିଁ ଦେଇ ଆ'ମ, ଆଗ୍ରଯ୍ଯେ ଜାଣିବେ ନାହିଁ । ସଙ୍ଗରେ ଛୋଟ ବୋତଲରେ ମହୁ ନେଇଯିବୁ । ସେହି ଦରବଟି କୁବେର ଘରେ ନ ଥାଇପାରେ । ଅଉ ସବୁ ଥିବ । ହଁ, ଆଇନାଟି ନେବାକୁ ହେବ । ନିଜର ମୁହଁ ଦେଖି ନାତୁଣୀର ମୁହଁ ସଙ୍ଗେ ତୁଳନା କରିବୁ । ତୁଳନା କରିବୁ' ।

ନିଜର ବାଇଆଣୀଆ ଭବନାରେ ନିଜେ ଶଙ୍କିତ ହେଲେ । ଜଣକୁ ସଙ୍ଗରେ ନେଇ ମହୁ, ଛୁଆର ଲୋଡ଼ା ହେବ ବୋଲି ପୁରୁଣା ଧୋବପକା ଫଟା-ଚିରା ଲୁଗା ଓ ଶାଢ଼ୀର ବୁଜୁଳା ସହ ଗାଆଁର ମୋଟି ତାମ୍ବୁଣୀ ଧାନ-କୁଟୁ-ତୁଣୀକୁ ସଙ୍ଗରେ ନେଇ ତାଙ୍କର ଅମଡ଼ା ଗଇଳ ତାଙ୍କ ଝିଅର ପାତିଲା ସଂସାର କୁବେର ବେହେରାର ଘରକୁ ଗଲେ ।

ଦୁଇ କାନରେ ଦୁଇଟି ସୁନ୍ଦର ନାମ ଯୁଗପତ୍ ଝଂକୃତ ହେଉଥାଏ **ସୀତା** ଓ **ଗୀତା** । ଘର ଭିତରକୁ ପାଦ ବଢ଼ାଉଣୁ ଆଉ ଦିଓଟି ନାମ ପୁଣି ମନରେ ପଶିଲା—**ନୀତା** ଓ **ରୀତା** । ଧେତ୍, ତା'ରେ ଛିଣ୍ଡିବାକୁ ତ ମାଳକ୍ଷା

ନାମ ଅଛି । ଅନ୍ତତଃ ସାତଟି ଝିଅ ହେଲେ ଯାଇଁ ତା'ର ତାଳ ଛିଣ୍ଡିବ । ଶେଷକୁ ଝିଅର ନାମ ଦିଆଗଲା ବିଦ୍ୟାଧରୀ, ବୋଇଲେ, ପାଚିଲା କଇଁଚି କାକୁଡ଼ି ଫଳ ପରି ସାମାନ୍ୟ ହଳଦୀ ପରଷାଦିଆ ଲାଲ୍ ଟହଟହ । ତାଙ୍କ ପଛେ ପଛେ ତାଙ୍କୁ ଫେରାଇ ଆଣିବାକୁ ଆଗ୍ରହେ ଅଗ୍ନି ଶର୍ମା ହୋଇ କୁବେର ବେହେରା ଘରେ ନାତୁଣୀକୁ ଦେଖିବାକୁ ଉପସ୍ଥିତ ହେଲେ ।

ଫଁ-ଫଁ ହେଉଥାନ୍ତି ଆଗ୍ରହେ, ମହାକ୍ରୋଧରେ ପରା, ଅବା ନାତୁଣୀକୁ ଦେଖିବାକୁ ସେ ଗହୀର ବିଲର ଚଲା ବାଟରେ ଧଅସି ଆସି ହାଲିଆ ବେଦମ୍ ହୋଇଥିଲେ, ନାରାୟଣ ଜାଣନ୍ତି । କିନ୍ତୁ ଝିଅ ପାର୍ବତୀର ଲମ୍ବିଲା କୋଡ଼ରେ ମୂଲ୍ୟବାନ୍ ଜାମା ପିନ୍ଧିଥିବା ସୁବର୍ଣ୍ଣ-ପିତୁଳା ଟିକି ନାତୁଣୀକୁ ଦେଖି ସେ ମୁଗ୍ଧ ହେଲେ । ପଞ୍ଚମୀ ଜହ୍ନର ଝଟକ । ଗହଣାରେ ଝଟକୁଛି । ସତେ ସେ ବିଦ୍ୟାଧରୀ ।

ବିଚାରିଲେ ଶର୍ମାଏ, ତାଙ୍କର କନ୍ୟା ପାର୍ବତୀର ନାରୀଜନ୍ମ ସାର୍ଥକ ହୋଇଛି । ସର୍ଜନା କରିବାକୁ ତା'ର ଜନ୍ମ । ଶରୀରର ଭିନ୍ନତା । ପୁରୁଷ ତା'ର ସହାୟକ, ସର୍ଜନା ପାଇଁ, ସୁ-ଶୃଙ୍ଖଳ ବ୍ୟକ୍ତିଗତ ଓ ସାମାଜିକ ଜୀବନ-ଯାପନ ପାଇଁ ।

ପାର୍ବତୀ ଠିକ୍ କରିଛି । ଏହି ବିରାଟ ଦୁନିଆଟି କେବଳ କେତୋଟି ଛୋଟ ଛୋଟ ସମାଜରେ ସୀମିତ ନୁହେ ବା ବହୁ ଯୁଗରୁ ପ୍ରଚଳିତ କେତେଗୁଡ଼ିଏ ନିର୍ମମ ନିୟମରେ ଆବଦ୍ଧ ସମାଜର ଦୁନିଆ ନୁହେ । ବହୁ ଧର୍ମ, ବହୁ ପ୍ରଥା ଓ ଚଳନର ସମଷ୍ଟି । ଗୋଟିଏ ଦେଶରେ, ଗୋଟିଏ ଧର୍ମରେ, ଗୋଟିଏ ଜାତିରେ, ଏପରିକି ଗୋଟିଏ କୁଟୁମ୍ବରେ ଗୋଟିଏ ପିତା ଓ ଗୋଟିଏ ମାତାର ବିଶ୍ୱାସ ଓ ଚଳନ ଭିନ୍ନ ହୋଇପାରେ । ଏକା ହେବା ସ୍ୱାଭବିକ ନୁହେ ।

ତେବେ, ପାର୍ବତୀ ଯାହାସବୁ ନିଜର ସୁଖ, ସ୍ୱାଚ୍ଛନ୍ଦ୍ୟ ପାଇଁ କରିଛି, ତା'ର ଚିନ୍ତାରେ ଚିନ୍ତା ମିଳାଇ ବିଚାର କଲେ କହିବାକୁ ହେବ ଯେ ସେ ଭଲ କରିଛି । ସେ ଯଦି ସମାଜ ବିରୁଦ୍ଧରେ ନୀରବ ବିଦ୍ରୋହ କରି ଧର୍ମକୁ ସାକ୍ଷୀ ରଖି କୁବେରକୁ ବିବାହ କରି ନ ଥାନ୍ତା ଗାନ୍ଧର୍ବ ରୀତିରେ, କାହୁଁ ଆଜି ପାଇଥାନ୍ତା ଏହି କନ୍ୟାରତ୍ନ ବିଦ୍ୟାଧରୀଟିକୁ ! ସେ ଦୀର୍ଘାୟୁ ହେଉ ।'

ବିମଳାନନ୍ଦ ଶର୍ମାଙ୍କ ତୁଣ୍ଡରୁ ସାବିତ୍ରୀ ଦେବୀ ପାର୍ବତୀର ତନୁଜା କୌତୁକିଆ ଟିକି ବିଦ୍ୟାଧରୀର ରୂପ ଓ କୌତୁକର ବର୍ଣ୍ଣନା ଶୁଣି ପୁଲକିତ ହେଲେ । କହିଲେ, 'ସେଇଟା ସରଗର ନକ୍ଷତ୍ର ମେଳରୁ କେମିତି ଖସିପଡ଼ିଛି ମୋ' ଝିଅ କୋଡ଼ରେ । ସେଇଟାକୁ ତମର ମନ୍ଦୁର ଗଦ ପୂରଇ ଡେଉଁରିଆ ଗୁଛା ପୋହଳାମାନେ ଅଣ୍ଟାରେ ନ ପିନ୍ଧାଇଲେ ସେ ଛୁ' କରିବ କହୁଛି । ମୋ' ସାନକୁହା ମାନ ।

ସେଇଆ ହେଲା ।

କୁତୂହଳୀ ହୋଇ ଯାକୁ ଦେଖି ସେ, ତାକୁ ଦେଖି ଆରକ, ଏପରି ଅନେକ ଗ୍ରାମବାସୀ ଓ ମାଇପେ, କାନରେ ତୁନି ତୁନି ଗାଉଁଲି ଅସନା ଭଷାରେ ବେଧ (ଅର୍ଥାତ୍ ଅବୈଧ) ଛୁଆ, ପୁଣି ସାଧୁଭଷା ବଢ଼ାଇ କହିବାକୁ ଯକ୍ଷ-ଗନ୍ଧର୍ବର ଅପ୍‌ସରୀ କନ୍ୟା ବିଦ୍ୟାଧରୀକୁ ଦେଖିବାକୁ ଆସି, ଖାଲି ହାତରେ ଆସନ୍ତେ କିପରି, ଟଙ୍କାଏ, ଅଧୁଲିଏ ଦେଖାଣ-ଦଣ୍ଡ ଦେଇଗଲେ । କହନ୍ତି, 'ଦଶପଚିଶ ଆଦ୍‌ମିକା ଲଠି ଏକ୍ ଆଦ୍‌ମିକା ବୋଝ' । ସେଇଆ ହେଲା । ଠୁଳ କଲାରୁ ଏକୋଇଶାବେଳରୁ ବିଦ୍ୟାଧରୀର ମହାଜନୀ କରିବାକୁ ଅନ୍ତ ହେଉ ପଛେ, ସ୍ୱତନ୍ତ୍ର ପାଣ୍ଠି ହୋଇଗଲା । କୁବେର ବେହେରା ତା ପାଇଁ ଗୋଟାଏ ଅଲଗା ହିସାବ ରଖି ବେପାର ଚଳାଇବ, ବଢ଼ାଇବ, ଡଡ଼ାଇବ, ଚଢ଼ାଇବ, କେବଳ ସ୍ୱର୍ଣ୍ଣ ଗହଣା ରଖି, ଟଙ୍କାରେ ମାସକୁ ଦୁଇଅଣା ସୁଧରେ କରଜ ଦେବ । କେବଳ ସୁନାରୂପା ଗହଣା । ଆଉ କିଛି ନୁହେଁ ।

ଶର୍ମାଏ ଖୁସି, ସାବିତ୍ରୀ ବି ଖୁସି ।

ଗ୍ରାମବାସୀ କେହି କେହି ଯକ୍ଷ କୁବେର ବେହେରାକୁ ନିନ୍ଦା କଲେ । କୁହାକୁହି ହେଲେ, ପତ୍ନୀଙ୍କ ଅନୁଜାଟା ଯକ୍ଷ ପାଲଟିବ । ଏହା ନିଶ୍ଚିତ ଦିନା-କେତେ ପରେ ।

ଗ୍ରାମବାସୀଏ ଜାଣିଲେ, କୁବେର ବେହେରା ଖଣ୍ଡାୟତ ଟୋକାର ଯକ୍ଷପଣିଆର ଆଗ ସହାୟକ ହୋଇଥିଲା କପାଳଫଟା ବାଲ୍ୟବିଧବା ନିଜେ ତାକୁ ଗେରସ୍ତ ହିସାବରେ ବରଣ କରି; ପୁଣି ଦିନାକେତେ ପରେ ବିମଳ ଶର୍ମାଙ୍କ ସେଇ ପାର୍ବତୀ କନ୍ୟାର ଝିଅ କୁବେର ଔରସଜା ବିଦ୍ୟାଧରୀର ମାତୁଳ-ମୁରବି ସମ୍ପତ୍ତି-ରକ୍ଷକ ହୋଇ, ତା'ରି ନାମରେ ପୁଣି କୁବେର

ସାହାଯ୍ୟରେ, ଉପଦେଶରେ, ବାସନ ଓ ଗହଣା ରଖି, ତହିଁରେ ନାମ ଲେଖି ତାରିଖ ଦେଇ, ଟଙ୍କାର ପରିମାଣ ଲେଖି କ୍ରମିକ ନମ୍ବର ପ୍ରକାରେ ସ୍ୱତନ୍ତ୍ର ଖାତା କରାଗଲା ।

ପାର୍ବତୀ ଖୁସି ହେଲା । ଏଣେ ଶର୍ମାଏ ଓ ତାଙ୍କର ପତ୍ନୀ ସାବିତ୍ରୀ ମଧ୍ୟ ପୁଲକିତ ହେଲେ । ସ୍ୱଜାତୀୟମାନେ ଶର୍ମାଙ୍କର ଏପରି ସୁଖ ଓ ସ୍ୱଚ୍ଛନ୍ଦ ଚଳନ ସମ୍ଭାଳି ପାରିଲେ ନାହିଁ । ଖୁଦଖିଆକୁ ପେଜପିଆଏ ସମ୍ଭାଳନ୍ତେ କିପରି ? ଭୁଟୁର୍ ଭଟର୍ ହେଲେ–

'ବ୍ରହ୍ମତ୍ ନାଶ ହେଉଛି ହେ, ଆକାଶ ଅବଶ୍ୟ ଛିଡ଼ିପଡ଼ିବ । ସମସ୍ତେ ନାଶ ଯିବେ । ପ୍ରଳୟର ପୂର୍ବ ସୂଚନା । ଜାଣ ତ ମାଳିକା କଥଣ କହିଛି ! ବୋଇଲା, 'ତରକିଥିବୁ ତେଏରକୁ' ପଢ଼, ବୁଝ, ଜାଣିବ । କଳିଯୁଗ ସରିଆସିଲା ହେ ! ମହର୍ଷି ଅଚ୍ୟୁତାନନ୍ଦ କ'ଣ ମିଛ କହିପାରିବେ ? ଯଦି ମୁକ୍ତି ଲଭିବ, ଏବହୁଁ ଗଞ୍ଜିକାର ଧୂଆଁ ସେବନ କର । ତ୍ରିକୁଟରେ ଲୟ ଲଗାଅ । ସେଇଠି ଜ୍ୟୋତି ଦର୍ଶନ କର ! ମୁକ୍ତ ହେବ ହେ, ଏବେ, ଜାତିଆଣ ଭବ ଛାଡ଼ । ସେ ପୁରରେ ଯେଉଁଠି ଆମ ସମସ୍ତଙ୍କର ଭେଟ ହେବ, ସେଠି ଜାତିଭେଦ ନାହିଁ, ଶ୍ରେଣୀଭେଦ ବି ନାହିଁ ।

ବୁଝିଲନା, ପାର୍ବତୀ ତମକୁ ସବୁ ଠିକଣା ଜବାବ ଦେଇଛି । କୁବେର ବେହେରା ବି । ଆମର ପ୍ରସ୍ତାବ ହେଉଛି, ତାକୁ ବାଛନ୍ଦ ନ କରି ତା' ସଙ୍ଗେ ଉପର ଠାଉରା ରୀତିରେ ହେଉ ପଛେ, ମିଶ । ଗୋଟାଏ ଭଲ ପୂଜାର ଆୟୋଜନ କରାଅ । ଠିଆପାଲା ହେଉ । ଆଉ ଠାଏ ଗୋଟିପିଲା ନାଚ ହେଉ । ଝିଅପିଲାଟା, ବାରବର୍ଷ କରିଥିଲେ ହୁଅନ୍ତା ; ତେବେ, ଆପଣମାନେ ବିଧାନ କଲେ ଏକୋଇଶା ବି କରାଯାଇପାରେ ।

'ଯେଉଁ ଦେଶରେ ଦ୍ରୁମ ନାହିଁ, ସେହି ଦେଶରେ ଗବଗଛକୁ ଦ୍ରୁମ କୁହାଯାଇପାରେ । ସେହିପରି କୁବେର ବେହେରାର ଜିଅରେ ଯେଉଁଠି ପିଲାଛୁଆ କିଛି ନାହିଁ, ସେଠି ଝିଅ ବକଟେ ତ ପୁଅଠୁ ବଳି ସେରନ୍ତା ।'

ସମସ୍ତେ ରାଜି ହେଲେ । ହରିବୋଲ ନାଦରେ ଗଗନପବନ କମ୍ପାଇଲେ । ଏହି ସୁ ସମ୍ବାଦ କୁବେର ବେହେରାଙ୍କୁ ଜଣାଇ ସେହି ମତେ ପ୍ରସ୍ତୁତ ହେବାକୁ ଖବର ପଠାଇଲେ ।

ଜଣେ ନୁହେ, ଏକ ସଙ୍ଗେ ଅନେକ ଟୋକାଙ୍କ ମୁହଁରୁ ଏହି ଉଦନ୍ତ କୁବେର ପାଇ ଉଷତ ହେଲା । ହେଣ୍ଡି ମାରି ପାର୍ବତୀକୁ କହିଲା, 'ଆମର ପ୍ରଥମ ସନ୍ତାନ ଝିଅଟି ନିଷୟ ଲକ୍ଷ୍ମୀ ଠାକୁରଣୀଙ୍କ ଅଂଶରେ ଜନ୍ମ । ସେ ଶୁଭ କନ୍ୟାଟିଏ, ଏଥିରେ ସନ୍ଦେହ ନାହିଁ । ତାହାରି ପାଇଁ ଗ୍ରାମବାସୀଏ ଆମକୁ ଭଇପଣିଆରେ ଗ୍ରହଣ କଲେ । ଆପେ କାଳକ୍ରମେ ବେପାର ବର୍ଦ୍ଧିବ । ଖରଚର ଦଶଗୁଣ ଲଭ ହେବ । ବିଗ୍ଧାଧରୀ ନିଷୟ ଶୁଭ......'

ଅଧିକ କୁହାଇ ନଦେଇ ପାର୍ବତୀ କହିଲା, କାହାର ଭଗ୍ୟରେ ବିଧାତା କ'ଣ ଲେଖିଛି କେହି ଜାଣେ ନାହିଁ । ଜାଣିବାର ଉପାୟ ନାହିଁ । ଯାହା ଆସିବାର ଆସୁ । ଅବସ୍ଥା ଦେଖି ସାଧ୍ୟ ଅନୁରୂପେ ବ୍ୟବସ୍ଥା କରିବାକୁ ଉଦ୍ୟମ କରହେବ । ତେଣିକି ଫଳ ଯାହା ହେବାର ହେଉ । ନଇ ତ ଅତିକ୍ରମ କରିବାକୁ ହେବ । ଦୂରରୁ ଏପାରିର ବାଲୁକା ଶଯ୍ୟା ଦିଶୁଛି । ତା'ପରେ ପାଣି । କେତେ ? ଡଙ୍ଗା ଓ ନାଉରି ଅଛନ୍ତି କି ନାହିଁ ଜଣାପଡ଼ୁ ନାହିଁ । ନଦୀରେ ପଶି ପାରିହେବାକୁ ପଡ଼ିବ । ଆଣ୍ଠୁଆଣି ପାଣି; ତେଣୁ ଲୁଗା ଟେକା ହେଲା ଆଣ୍ଠୁ ଉପରଯାଏ । ଆଗରୁ ସାବଧାନ ହେଲେ ଭଲ ।

କୁବେର ବେହେରା ଓ ପାର୍ବତୀ ଦେବୀ କନ୍ୟା ବିଗ୍ଧାଧରୀର ଶୁଭ ମନାସି ତା' ନାମରେ ସଞ୍ଚୟ କରିବାକୁ ସଙ୍କଳ୍ପବଦ୍ଧ ହେଲେ, ବିଗ୍ଧରିଲେ, ତା'ପରେ ଆସିବେ ଯେଉଁ ସନ୍ତାନମାନେ, ପୁଅ ହେଉ ବା ଝିଅ ହେଉ, ତା'ର ଭବିଷ୍ୟ ପାଇଁ ମଧ୍ୟ ଏହିପରି ବ୍ୟବସ୍ଥା କରଯିବ । ଯମ କେବେ ଟାଣିନେବ କେହି ତ ଜାଣେ ନାହିଁ ଗୋ ପାର୍ବତୀ, ପୁଣି ଭବିଷ୍ୟତରେ କି ଜଟିଳତା ସୃଷ୍ଟି ହେବ କହି ତ ହେଉ ନାହିଁ । ସନ୍ତାନମାନେ ପରପାଖରେ ହାତ ନ ପାତି ନିଜ ଧନରେ ଯେପରି ଚଳିବେ ସେପରି ବ୍ୟବସ୍ଥା କରିବା ।

କୁବେର କହିଲା, ହଁ ସେଇଆ, ଏହାର ଅନ୍ୟଥା ହେବ ନାହିଁ । ପାର୍ବତୀ ଖୁସି ହେଲା । ଦୁଇବର୍ଷ ପରେ କୋଳକୁ ଆସିଲା ଦ୍ୱିତୀୟା କନ୍ୟାଟିଏ ; ବିଗ୍ଧାଧରୀଠାରୁ ଅଧିକ ସୁନ୍ଦରୀ । ପୁଣି ବୁଢ଼ା ଅଜା ତା'ର ନାମକରଣ କଲେ, 'ବିଦ୍ୟାଧରୀ' । ଏଇଟି କୁଆଡ଼େ ସର୍ବଶେଷ; ଏହାର ତଳେ ଆଉ ସନ୍ତାନ ହେବେ ନାହିଁ । କିନ୍ତୁ 'ଜନମ ମରଣ ବରଷା, କହି ନ ପାରେ ପୁରୁଷା, ବୋଲି କଥା ରହିଛି । ପୁଣି ପାଞ୍ଚବର୍ଷ ପରେ ଜନମିଲା ଯେଉଁ ସନ୍ତାନ ସେଇଟି ଦିବ୍ୟସୁନ୍ଦର ପୁଅଟିଏ । କେଉଁ ଝିଅର ମୁହଁ ଏପରି ସୁନ୍ଦର ହେବ !

ଦୁଇଟି ଝିଅରେ ସ୍ୱର୍ଣ୍ଣ-ପିତ୍ତଳା ପୁଅ । ଭଗ୍ୟରେ ଥିଲେ ମିଳେ । 'ଶୁଣ ଗୋ ସାବିତ୍ରୀ, ଯିଏ ଦେଖୁଛି ସିଏ କହୁଛି, ତମରି ବରଗତ ହୋଇଛି ହୋ ଗୋସେଇଁ ଆଖି ଛୁଇଁ କହୁଛି, ମିଛ କହୁ ନାହିଁ । କୁବେର ବେହେଗ ଖଣ୍ଡାୟତ ଟୋକାକୁ ନ ଦେଇ ଧାନ କୁଟିବାକୁ ପରଘରକୁ ପଠାଇବାକୁ ଜାଣ ବାଧ୍ୟ କରିଥିଲେ, କାହୁଁ ସେ ପାଇଥାନ୍ତା ଏପରି ଅମୂଲ୍ୟ ନିଧି ?

'ପର ଅଗଣାରେ ଅଜଣା ପଶି ପରର ଓଳିକୁ ପେଟବିକଳିଆ ଥୋମଣି ବଢ଼ାଇ ପାଞ୍ଚଣ-ବାଡ଼ିଆ ଖାଇ ଓଳେଇ ବୋଲି ତଡ଼ା ଖାଇଥାନ୍ତା ।...

'ତା'ର କପାଳ ଭଲ ଗୋ ! ସଂସାର କଲାରୁ, ନକ୍ଷତ୍ର ପରି ଝଟକିଲା ଦୁଇ ଝିଅ ଓ କନ୍ଦର୍ପ ପରି ସୁନ୍ଦର ପୁଅଟିଏ ପାର୍ବତୀ ଆମର ପାଇଛି । ସୁଖରେ ଅଛି । ଯକ୍ଷ କୁବେରକୁ ଜାଣ ରୂପର ଝଲକ ଓ କଥାର ଜିମିଆଁରେ ବାନ୍ଧି ତା'ର ଧନ ଗ୍ରାମବାସୀଙ୍କୁ ଦିଆଇ—ଅବଶ୍ୟ ସୁଧରେ— ଗରଜ ମେଣ୍ଟାଉଛି । ଶୁଝିଲାବେଳେ କୁବେର ଗଡ଼କୁ ଖାତକ ପାଇଁ ମିନତି କରି, ଗାଳି ଶୁଣି ସୁଧ କମାଉଛି । ତା'ରି ତୃତୀୟ ସନ୍ତାନଟି ଦୀର୍ଘାୟୁ ହେଉ । ସମସ୍ତଙ୍କର ଏହି କଲ୍ୟାଣ ।'

× × × ×

ଚତୁର୍ଥ ସନ୍ତାନ ପାର୍ବତୀର ପେଟରେ ରହିଲା । ତୃତୀୟ ସନ୍ତାନ ଦିବ୍ୟସୁନ୍ଦର ସ୍ୱାସ୍ଥ୍ୟବାନ ପୁତ୍ରଟିକୁ ତିନିବର୍ଷ ପୂରି ଏବେ ଚାରିବର୍ଷ ଚାଲିବାକୁ ଯାଉଛି । କିନ୍ତୁ ସେ ତ ହୋଇଛି ମୂକ, ବଧିର ଓ ଅଚଳିଆ । ଘୋଷାରି ହୋଇ ଯାଏ । ଚାଲିବା ତ ଅସମ୍ଭବ ; କେବଳ କାଖରେ କୋଡ଼ରେ ଗତି ; ନୋହିଲେ ଅଚଳ । ସବୁବେଳେ ଭେଁ ଭେଁ ରଡ଼ି । ଯାହାର ଏକୋଇଶା ପାଇଁ ଏତେ ଆଧି ବିଧି ହୋଇଥିଲା, ଏବଯାଏ ପୁଣି ଦିଅଁମାନଙ୍କର ପୂଜା-ଆରାଧନା, ଯୋଗୀ, ଭିକାରି ଓ ଅନ୍ୟ ଜାତୀୟ ମାଗତାଙ୍କୁ ଭୋଜନ ଓ ଦାନ ଦିଆଯାଉଛି; ଏଣେ ପୁଣି ଗୁପ୍ତରେ ଠାକୁରଙ୍କ ପାଖରେ ଗୁହାରି କରାଯାଉଛି, ଏ ଦୁଃଖରୁ ତାହିଗତି କର, ପାଖକୁ ନିଅ, ଆଉ କଲବଲ ନକର ହେ ମୁରାରି ଚକ୍ରଧର ହରି !'

ସାବିତ୍ରୀ ଗୁହାରି କଲେ ଖଟୁଲି ଉପରେ ପୂଜା ପାଉଥିବା ଠାକୁର-ମାନଙ୍କୁ, 'ମୋ ପାର୍ବତୀକୁ ଆଉ ଗୋଟିଏ ଝିଅ ଦିଅ, ତା'ରି ରୂପ ନେଇ

ଜନମ୍‌ । ଅଚଳିଆ ପୁଅ ପୁଞ୍ଜାକରୁ କ'ଣ ମିଳିବ ? ନଥିଲକୁ ନେଫଡ଼ା ପରି ଅଚଳିଆ ପୁଅଟାଏ ତ ଅଛି । ସେଇ ନରକରୁ ଉଦ୍ଧାର କରିବ ; ଆଉ କ'ଣ ?

ପାର୍ବତୀ ଓ କୁବେରଙ୍କର ସେହି ଅଚଳିଆ ନଥିଲକୁ ନେଫଡ଼ା ଗେହ୍ଲା ପୁଅଟି ସବୁ ସେବାଯତ୍ନ ସତ୍ୱେ କୁବେର ଓ ପାର୍ବତୀଙ୍କୁ କନ୍ଦାଇ ସେପୁରକୁ ଗ୍ଲଲିଗଲା । ସୁଖୀ ହେଲେ ସାବିତ୍ରୀ ଓ ବିମଳାନନ୍ଦ । 'ଅନର୍ଥକ ଜଞ୍ଜାଳ ଓ ଦୁଃଖରୁ ରକ୍ଷା ପାଇଗଲା ମୋ'ର ଝିଅଟି ।' ବିମଳାନନ୍ଦ କହିଲେ ସାବିତ୍ରୀଙ୍କୁ । ସାବିତ୍ରୀ ଉତ୍ତର ଦେଲେ, 'ଭଲ ହେଲା, ଭଗବାନ ତାକୁ ଅନର୍ଥକ ଭବିଷ୍ୟତରେ ତା'ପାଇଁ ଦୁଃଖ ଜଞ୍ଜାଳ ସହନରୁ ବର୍ତ୍ତିଗଲା ।'

ବିମଳାନନ୍ଦ କହିଲେ ସାବିତ୍ରୀଙ୍କୁ, 'ବିଧି କେତେବେଳେ କାହିଁକି କ'ଣ କରେ ଆମେ କ୍ଷୁଦ୍ର ମାନବ, ଆମର ଜାଣିବାକୁ ବା କି କଉମତି ଅଛି ! ସହିବା ଛଡ଼ା ତ ଅନ୍ୟ ଗତି ନାହିଁ । ଉପାୟ ଥିଲେ ପ୍ରତିକାର ପାଇଁ ଚେଷ୍ଟା କରଯାଏ ; ପୁଣି କୃତକାର୍ଯ୍ୟ ହେବାପାଇଁ ତାଙ୍କରି ପାଖରେ ପ୍ରାର୍ଥନା । ହେଲେ, ତାଙ୍କର କରୁଣା ନହେଲେ, ତମର ଦୁର୍ଭାଗ୍ୟ । ଗତ ଜନ୍ମର ପାପର ଫଳ ଅବା ଏଇ ଜନ୍ମରେ କେଉଁ ଗୋପନ ଗର୍ହିତ କର୍ମ ପାଇଁ ବିମୁଖଭବ । ଅବା ପୂର୍ବଜନ୍ମରୁ ସଞ୍ଚିତ କି ତାର ପୂର୍ବବର୍ତ୍ତୀ ଜନ୍ମମାନଙ୍କରୁ ଦଣ୍ଡ ଭୋଗ ନକରି ଗଡ଼ି ଆସୁଥିବା ପାପକର୍ମର ପ୍ରାରବ୍‌ଧ ଭୋଗ କରିବାକୁ ହେବ ।

ଯଦି ବିଶ୍ୱାସ ନୋହିଲା ତ ନାହିଁ । ଘଟଣାଟି ଯେପରି ଘଟିଲା ଘଟୁ, ସହିନିଅ, ଫୁଟ୍‌କି ମାରି ଦୁଃଖର ଭବନାକୁ ଉଡ଼ାଇଦିଅ ।

ଗଲେ ଯାଉ ସେ ଅଚଳ ପିଲଟା, ସାବିତ୍ରୀ, ପାର୍ବତୀକୁ ବୁଝାଇଦିଅ ତା'ର ତହୁଁ ବଳି ତହୁଁ ବଳି ସୁନ୍ଦରୀ ଝିଅ ଦିଓଟି—ଶ୍ରୀମତୀ ବିମ୍ବାଧରୀ ଓ ଶ୍ରୀମତୀ ବିଦ୍ୟାଧରୀ ଦିଓଟି ନକ୍ଷତ୍ର ପରି ଝଟକିବେ ।

ପାର୍ବତୀ ବୁଝିଲା ; ବୁଝିଲା ତ କୁବେର ବେହେରା । ଦୁହିଁଙ୍କର ସ୍ନେହ ଏକୀଭୂତ ହେଲା ସେହି ଝିଅ ଦିଓଟିଙ୍କ ଉପରେ । ଆଖିର ତାରକା ଦିଓଟି, ଯାହାକୁ କହନ୍ତି ଆଖିର ପୁଅ ।

'ଦଇବୀ ଦୁର୍ଯୋଗ କଥା । ଭଲ ମଣିଷଟା, କ'ଣ ହେଲଟି, ଏଣୁ ତେଣୁ ତ ସେ କିଛି ଖାଇ ନ ଥିଲେ' କୁବେର ବେହେରା କହିଲେ ଶଶୁର

ବିମଳାନନ୍ଦ ଶର୍ମାଙ୍କୁ । ଶାଶୁ ସାବିତ୍ରୀ ଦେବୀଙ୍କ ଉପସ୍ଥିତିରେ । ଝିଅ ଦିଓଟିଙ୍କୁ ସଙ୍ଗରେ ଧରି ମୁଁ ଦହର କୂଳକୁ ବୁଲାଇ ନେଇଥିଲି । ଦହଟା ତ ଏବେ ପ୍ରାୟ ପୋତିହୋଇଗଲାଣି । ଦଳ ଗିଡ଼ିଛି । ଖାଲି ମଝିରେ ମନ୍ଦାଏ ପାଣି । ଜୋକ ଭରଭର । ବେଙ୍ଗ ଆଉ ଧଣ୍ଡସାପ । ଭିତରକୁ କେହି ତ ପଶନ୍ତି ନାହିଁ ।

ଝିଅ ଦିଓଟିଙ୍କୁ କୂଳରେ ଠିଆ କରି ତମ ପାଇଁ ଫୁଲ ଆଣୁଛି ଏଇଠି ଥା, କୁଆଡ଼େ ଆଉ ଯିବ ନାହିଁ, କହି ପାର୍ବତୀ ପାଣି ପାଖକୁ ଗଲା । 'ହାସୁ ହାସୁ' କହି ଆଣ୍ଠୁଏ ପାଣି ଭିତରକୁ ପଶିଲା । କଇଁ ଡଙ୍କ ଧରି କଇଁଫୁଲ କେଇଟି ପାଖକୁ ଓଟାରି ଆଣିଲା । ବେଶୀଗୁଡ଼ାଏ କ'ଣ ହେବ ବିଗ୍ଭରି ଅନର୍ଥକ ଅଧିକ ତୋଳି ନଷ୍ଟ କରିବାକୁ ଗ୍ଭହିଁଲା ନାହିଁ ।

ଦୁଇ ପିଲାଙ୍କର ହାତ ଧରି ଭଲରେ ଭଲରେ ଫେରିଆସିଲା ତ କେଜାଣି କାହିଁକି କୁବେର ଆଗକୁ ଆସି କହିଲା, କିଏ ବା ସେଇ ବୁଢ଼ୀଟା, ମଥାରେ ମଥାଏ ସିନ୍ଦୂର ବୋଳିଛି, ଦି' ଆଖି ତ କରିଛି କଜ୍ଜଳରେ ବିଲିବିଲି । କହୁଛି, ତୋ'ର ସେଇ ଦୁଇଟି ସୁନ୍ଦରିଆ ଝିଅଙ୍କ ଭିତରୁ ମତେ ଗୋଟିଏ ତୋ' ମନ ଖୁସିରେ ଦେଇଦେ ଲୋ ବାଇଆଣୀ, ନହେଲେ ଦିଓଟିଯାକଙ୍କୁ ମୁଁ ମୋ ପାଖକୁ ନେଇଯିବି ।

ପାର୍ବତୀର ମନ ହେଉଥିଲା, ସେଇ ଠାକୁରାଣୀ, ଅବା ପ୍ରେତିନୀ ଯିଏ ତାକୁ ତା'ର ପିଲା ଦିଓଟିଙ୍କୁ ମାଗିଲା, ତା'ର ପାଦରେ ପଡ଼ନ୍ତା, ନିଉଛାଳି ହୋଇ କହନ୍ତା, "ମୁଁ ହେଇଟି ମୋ'ର ଜୀବନଟା ତମର ପାଦପଦ୍ମରେ ବିନା କୁଣ୍ଠାରେ ଅରପି ଦେଉଛି, ଦଶଦିଗପାଳଙ୍କୁ ସାକ୍ଷୀ ରଖି ଏହା କହୁଛି, ନିରୀହ ନିର୍ଦ୍ଦୋଷ, ପରଦୁଃଖରେ କାତର ସ୍ୱାର୍ଥତ୍ୟାଗୀ ନିଃସାହା କୁବେର ବେହେରାଙ୍କର ପ୍ରାଣରୁ ବଳି ଅଧିକ ସ୍ନେହୀ ଝିଅ ଦିଓଟି ବିମ୍ବାଧରୀ ଓ ବିଦ୍ୟାଧରୀ ଦୁଇଟିଙ୍କୁ ଘଣ୍ଟ ଘୋଡ଼ାଇ ବଞ୍ଚାଇ ରଖ ।"

ପାର୍ବତୀ ତଳେ ମୁଣ୍ଡ ଲଗାଇ ସାଷ୍ଟାଙ୍ଗ ପ୍ରଣିପାତ କଲା । ପୁଣି ତଳେ କେତେଥର ମୁଣ୍ଡ ମାରି ନିଜର ଜଣାଣକୁ ବାରମ୍ବାର ବଖାଣିଲା । ମୁଣ୍ଡ ଉଠାଇ, ବିଚଳିତ କନ୍ୟା ଦୁହିଁଙ୍କର ହାତ ଧରି ଘରକୁ ଫେରିଲା ।

ଟାକି ବସିଥିଲା ଉଦ୍‌ବିଗ୍ନ କୁବେର ବେହେରା । ସେ ଦୁଇ କନ୍ୟାଙ୍କର ମୁଖ ଚୁମ୍ବନ କରି ଦୁଇ କାଖକୁ ନେଉଣୁ, ରହସ୍ୟ କରି ରସିକତାର ରଙ୍ଗ ରସ ଭଷାରେ ବୋଲି କହିଲା, ତମର ପାଉଣାଟି ବାକି ରହିଲା । ଆଜି ପାଇବ ଯେ ଆଉ କେତେବେଳେ, କିଏ ଜାଣେ । ଏବେ ଆଗ ଯାଅ, ତମର ଏକଦା-ଶଶୁର ବିଖ୍ୟାତ ପାଲା-ଗାୟକ ପଣ୍ଡିତ ବୃଦ୍ଧ କବିଶେଖର ଦୟାସାଗର ଶର୍ମା ଆସିଛନ୍ତି ।

ସେ କହୁଥିଲେ, ଏକଦା ତୁମେ ତାଙ୍କର ପୁତ୍ରକୁ ବିବାହ କରିଥିଲ । ବୃଦ୍ଧଙ୍କୁ ସମସ୍ତେ ଡାକନ୍ତି କବିଶେଖର ବୋଲି । କିନ୍ତୁ ଲେଖିଲାବେଳେ ସେ କେଜାଣି କାହିଁକି ଦୟାସାଗର ପଦଟି ଆଗ ଯୋଡ଼ନ୍ତି, ସେଇଠୁ ରଥ ।

ବୃଦ୍ଧ ଜୀବନରେ ସଦୁପାୟରେ ବହୁ ଅର୍ଥ ଅର୍ଜନ କରିଥିଲେ । ସତ୍ ଉପାୟ ବୋଇଲେ ସେ ବୁଝନ୍ତି, 'ସୁନା ଗହଣା ବନ୍ଧକ ରଖି ମାସିକ ସୁଧରେ ଟଙ୍କା ଉଧାର ଦେବା । ଚକ୍ରବୃଦ୍ଧିରେ ମୂଳ ବଢ଼େ, ସୁଧ ବଢ଼େ, ଅମାନତ୍ ସ୍ୱରୂପ ସୁନା ଗହଣା ବନ୍ଧକ ରଖାଯାଏ ।

କ୍ରମେ ସୁଧ ବଳାଏ ମୂଳକୁ । ଗହଣା ମୁକାଳିବାକୁ ଆଉ ଦିନ ପାଏ ନାହିଁ । ଯାହା କହନ୍ତି, ଦେଉଳକୁ ମୁଖଶିଆଳି ବଳାଏ । ଆଉ କରଜ ଅଶୁଝା ରହେ । ବନ୍ଧାଦିଆ ଚିଜ ସାହୁକାରର ହୁଏ, ଖାତକ ତା'ର ନାମ ଧରେ ନାହିଁ । କେଉଁ ଲେଖାପଢ଼ି, ସାକ୍ଷୀ ଗୁହା ଅଛି ଯେ କୋର୍ଟ କଚେରିକି ଯିବ ! ପଇସା ଅଭାବରୁ ତ କରଜ ଶୁଝାଯାଇପାରିଲା ନାହିଁ, ପୁଣି ମକଦ୍ଦମାରେ ଖରଚ କରିବାକୁ ଧନ କାହୁଁ ଆସିବ ? ନେବ ଟରଣୀ, ମୋହରିର, ଓକିଲ, ପେସ୍କାର, କିରାଣି, ପିଅନ, ଦଫାଦାର ଓ ଆଉମାନେ, ଅନ୍ୟାନ୍ୟ ବହୁ ଖରଚ ଅଛି ।

ଘୋଷରଟା ଅଧିକ ବାଧେ । ଦୂରୁ ଜୁହାର । ଗଲେ ଯାଉ । ଏମିତି ବିଗ୍ରହରେ ଅନେକଙ୍କର ଦରବ ରହେ, କରଜ ବୁଡ଼େ । ଏ ପାଖ ବା ସେପାଖ, କେହି ନାମ ଧରନ୍ତି ନାହିଁ ।

× × × ×

ପାର୍ବତୀର ପ୍ରଥମ ସ୍ୱାମୀ କରୁଣାକର ରଥ ବ୍ରତ ବିବାହ ପରେ ବାଲ୍ୟାବସ୍ଥାରେ, ଅବଶ୍ୟ ବେଶ୍ ଚଳିଖ ଚତୁର ଜ୍ଞାନବନ୍ତ ହେଲା ପରେ ସେପୁରକୁ

ଗଲେ । ସେ ଅତି ମେଧାବୀ ଛାତ୍ର ଥିଲେ । ଜାତିବର୍ଣ୍ଣନିର୍ବିଶେଷରେ ସମସ୍ତେ ତାଙ୍କୁ ଭଲ ପାଉଥିଲେ । ସବୁ ଘରର ସେ ପୁଅ; ସମସ୍ତଙ୍କର ସେ ରତ୍ନ ସମସ୍ତଙ୍କର ଦୁଃଖରେ ଦୁଃଖୀ, ସୁଖରେ ସୁଖୀ ।

ସପନରେ ଦେଖିଲା ପରି ପାର୍ବତୀର ମନେ ପଡ଼େ ସେହି ସୁନ୍ଦରିଆ କୁଲୁକୁଲିଆ ମୁହଁଟି । ସେ କେତେଥର ହସିଥିଲେ । ସେଇଆଙ୍କୁ ନେଇ ସେ ସଂସାର କରିଥାନ୍ତା । ବିଦ୍ୟାଧରୀ ଓ ବିଦ୍ୟାଧରୀ ତାଙ୍କରି ଝିଅ ହୋଇଥାନ୍ତେ । ଅବା ହୋଇଥାନ୍ତେ ପୁଅ ଦିଓଟି—ବିଦ୍ୟାଧର ଓ ବିଦ୍ୟାଧର ଅବା, ତାଙ୍କର ଆଉ କ'ଣ ନାମ ଶଶୁରେ ଦେଇଥାନ୍ତେ । —ଏଇ ତ, ଆଗରେ ବସିଛନ୍ତି ତା'ର ସେକାଳର ଶଶୁର ମହାପଣ୍ଡିତ ସମ୍ମାନିତ କବିରଜ ଦୟାସାଗର ରଥ । କେତେକେତେ ଲୋକ ଆସି ଚରଣ ତଳେ ମୁଣ୍ଡ ଲଗାଉଥିଲେ । ବିଦ୍ୟାବିନୋଦ ପଣ୍ଡିତ ଦୟାସାଗର ରଥ ରାଜସଭାମାନଙ୍କରେ ସମ୍ମାନିତ ହେଉଥିଲେ । ପାଟ ଓ ମଠାର ଯଥା ସଙ୍ଗେ କୁଣ୍ଡଳ ଓ ସୁନାର ହାରମାନ ପୁରସ୍କାର ପାଉଥିଲେ । ବାହାଘର ବେଳେ ଏଇ ଶଶୁରେ ତା'ର ବେକରେ ଯେଉଁ ରମାଭିଷେକ ପଦକଝୁଲା ଓଜନିଆ ହାରଟିଏ ଲମ୍ବାଇ ଦେଇଥିଲେ ସେଇଟି ତ ତା'ର ପେଟଯାଏ ଲମ୍ବିଲା । ତେଣୁ ତାକୁ ଛାତି ଉପରକୁ ଟେକି ରେଶମ ସୂତାରେ ଉପରେ ବାନ୍ଧିଲେ । ପଥର—ବସା ଝଟକିଲା ହାରଟି ତାର ଛାତି ଉପରେ ଝୁଲିଲା । ଦେଖଣାହାରୀଙ୍କର ମନ ମୋହିଲା ।

ସେହି ଦୟାସାଗର ରଥ ହେଇଟି ଆଗରେ ବସିଛନ୍ତି । ଆହା, କାହିଁ ସେ ଶତ୍ରୁଶଙ୍କା ସ୍ୱାସ୍ଥ୍ୟ, ଝଟକିଲା ରୂପ, ଜଳିଲା-ଜଳିଲା ଉଜ୍ଜ୍ୱଳ ଆଖିର ତେଜ ! ମୁଣ୍ଡର କେଶ ଧବଳ ହୋଇଛି; ଏକମାତ୍ର ପୁତ୍ରର ତିରୋଧାନର ଦୁଃଖର ତାପରେ ସେ ଖଳମନ ହୋଇଛନ୍ତି । ସେ ପାର୍ବତୀ ଅଲକ୍ଷଣୀ; ତାଙ୍କର କନ୍ଦର୍ପ ପରି ସୁନ୍ଦର ଏକମାତ୍ର ପୁତ୍ରର ମରଣର କାରଣ ସତେ ! ସତେ କଣ ସେ ଅଲକ୍ଷଣୀ ?

ସେ କ'ଣ ପ୍ରାୟଶ୍ଚିତ କରିପାରି ନ ଥାନ୍ତା ? ସେ କ'ଣ ପୁତ୍ରହରା ପିତାଙ୍କର ଦୁଃଖ କିଞ୍ଚିତ୍ ଲଘବ କରିପାରି ନ ଥାନ୍ତା ?

ସେ ବିଚଳିତ ହୋଇ କ୍ଷଣକ ପାଇଁ ଭୁଲିଗଲା ଯେ ତା'ର ସ୍ୱାମୀ ଓ ସଂସାର ଅଛି । ଦିଓଟି ସନ୍ତାନ ଅଛନ୍ତି । ସେ କମ୍ପିତ ପଦରେ, ଲୋତକାର୍ଦ୍ର ନେତ୍ରରେ ପ୍ରଣିପାତ କଲା ।

ଏହି ହତଭାଗ୍ୟ ବୃଦ୍ଧ ଶଶୁରଙ୍କର ଏକମାତ୍ର ପୁତ୍ର କରୁଣାସାଗର । ତା' ପ୍ରତି ଓ ତାଙ୍କ ପିତାଙ୍କ ପ୍ରତି ନିଷ୍ଠୁରଣ ହୋଇ ବାଲ୍ୟାବସ୍ଥାରେ ସ୍ୱର୍ଗଗାମୀ ହେଲାରୁ, ତାଙ୍କ ସଙ୍ଗେ ସଂପୃକ୍ତ ଦୁନିଆରେ କେତେ ଅପ୍ରତ୍ୟାଶିତ ଘଟଣାମାନ ଘଟିଗଲା ସତେ ! ବୋହୂ ପାର୍ବତୀ ଜାତି, ବଂଶ ଓ ପରମ୍ପରାକୁ ଅମାନ୍ୟ କରି କେବଳ ସାଂସାରିକ ସୁଖ ଓ ଜୀବନର ଆମୋଦ ପାଇଁ ଜାତିଆଣର ପରମ୍ପରା—ପ୍ରଥାକୁ ଅମାନ୍ୟ କଲା । ଅନ୍ୟମାନେ ଅବଶ୍ୟ ପ୍ରବର୍ତ୍ତାଇଲେ ।

ସେ ଯାହା ହେଉ, ଧର୍ମ ଆଖିରେ ହୁଏତ ସେ ପାତକିନୀ, କିନ୍ତୁ ଆଇନ ଆଖିରେ, ଦେହର ପ୍ରାକୃତିକ ରିହ ଓ ମନର ଉତ୍ତେଜନା ଚକ୍ଷୁରେ ସେ ପାତକିନୀ ନୁହେଁ । ଏହା ଚିନ୍ତାକରି କମ୍ପିତ ପଦରେ ପାର୍ବତୀ ଏକଦା ଶଶୁର ବୃଦ୍ଧ ଦୟାସାଗରଙ୍କ ଆଗକୁ ଯାଇ ନତଜାନୁ ହୋଇ ପ୍ରଣତ ହେଲା । 'ଉଠ୍ ମା, ଉଠ୍ ମା' କହି ବୃଦ୍ଧ ତାଙ୍କର ସ୍ୱଳ୍ପକମ୍ପିତ ହାତରେ ମୁଣ୍ଡ ସାଉଁଳିଲେ । ବିସ୍ମୃତ ମୃତ ପୁତ୍ରଟି ତାଙ୍କର ମନେ ପଡ଼ନ୍ତେ ଦୁର୍ବଳ ହାତଟି ସାମାନ୍ୟ ପ୍ରକମ୍ପିତ ହେଲା । ଧୈର୍ଯ୍ୟର ବନ୍ଧ ହୁଏତ ଭାଙ୍ଗି ପଡ଼ିଥାନ୍ତା । କିନ୍ତୁ ପାର୍ବତୀ ସଙ୍ଗେ ସଙ୍ଗେ ଉଠି ଠିଆ ହେଲା ।

ଦୟାସାଗର କମ୍ପିତ ହାତରେ ଅଣ୍ଟାରେ ଝୁଲୁଥିବା ବଡ଼ ବଟୁଆଟି ଭିତରୁ ଗୋଟିଏ ସୁନ୍ଦର ମୋଟା ସୁନାହାର କାଢ଼ିଲେ । ତହିଁରେ ତିନୋଟି ପଦକ ଝୁଲୁଥିଲା ମଝିଟି ବଡ଼, ଦୁଇ ପାଖରେ ଦୁଇଟି ସାମାନ୍ୟ ଛୋଟ । ସେଇଟି ପାର୍ବତୀର ହାତକୁ ବଢ଼ାଇଦେଲେ । କହିଲେ, "ପନ୍ଦର ଭରି ଅଛି ମା, ସୋନପୁରୀ ଖାଣ୍ଟି ସୁନା, ସେଇଠିକାର ସୁଦକ୍ଷ ବଣିଆ ଗଢ଼ିଛନ୍ତି ।"

ପାର୍ବତୀର ଲୋଭିଲା ହାତ ଛାଆଁକୁ ଲମିଯାଉଣୁ ଅଟକିଗଲା । ସେ ପଛେଇ ଆସିଲା । ହାତ ନୁଆଇଁ ଶଙ୍କିତ ହୋଇ ପଚାରିଲା, "କାହିଁକି ସେଇଟି ଆଣି ମତେ ଦେଖାଉଛନ୍ତି ? ଅତି ଅମୂଲ୍ୟ ପଦାର୍ଥ, ନନା ! କ'ଣ ଆପଣଙ୍କର ଉଦ୍ଦେଶ୍ୟ ମତେ ଖୋଲିକରି କହନ୍ତୁ ।"

ବୃଦ୍ଧ କହିଲେ, "ମା ପାର୍ବତୀ, ତୁମର ଅନ୍ତତଃ ଏତିକି ମନେଥିବ ଯେ ବାଲ୍ୟକାଳରେ ଯେଉଁ ବାଳକଟିକୁ ତମେ ପ୍ରଥମେ ବିବାହ କରିଥିଲ, ତା'ର ନାମ କରୁଣାକର, ଆଉ ତମର ଶଶୁରଙ୍କର ନାମ ଦୟାସାଗର । ମୁଁ ହିଁ ସେହି ହତଭାଗ୍ୟ । ପୁତ୍ର ସ୍ୱର୍ଗବାସୀ ହେଲା । ତୁମେ ତ ଆଉ ତମର ଦୁଃଖୀ ଶଶୁର

ଓ ଦୁଖିନୀ ଶାଶୁଙ୍କୁ ଥରେ ଦେଖିବାକୁ ଗଲ ନାହିଁ । ଅବଶ୍ୟ ସାନ୍ତ୍ୱନା ଦେବାକୁ, ଶଙ୍ଖୋଳିବାକୁ ଯାଇଥିଲେ ତମର ପିତା । ସେତିକି ମା, ସେତିକି ।

"ତମେ ଇଆଡ଼େ, ଆମେ ଦୁଃଖୀ ଦିହେଁ ସିଆଡ଼େ । କହିଲି ପଗ, ଯେଉଁମାନେ, ଅର୍ଥାତ୍ ମୋ'ର ବଡ଼ ଝିଅର ଭେଣ୍ଡା ପୁଅମାନେ ମୋ'ର କ୍ଷମତା ପତ୍ର ବଳରେ ବୃଝ'ଶୁଝା କରୁଥିଲେ । ସେମାନେ ସମ୍ପତ୍ତି ବନ୍ଧାଛନ୍ଦା ପକାଇଲେ । ସବୁ ନିଲାମ ହୋଇଯିବ, ମା !

"ଏଇ ଗହଣା ଗଣ୍ଠିରୁ କି ଲଭ ମିଳିବ ? ହାବୁଡ଼େ ପଡ଼ିଲେ ଯାକୁ ବିକି ମଦ ପିଇଦେବେ । ତୁ ରଖ ମା ପାର୍ବତୀ, ତୁଇ ବନ୍ଧାରଖ, ବୋଇଲେ କୁବେର ବେହେର ରଖନ୍ତୁ । ଯେତେ ସୁଧ ସେ ନେବେ ସେଥିରେ ମୁଁ ରାଜି । କରନ୍ତୁ ପଛେ ଚକ୍ରବୃଦ୍ଧି ସୁଧ ନେଲେ ମୁଁ ରାଜି । ଦୁଇହଜାର ଟଙ୍କା ମୋ'ର ଦରକାର ଲେଡ଼ା ।"

ବୃଦ୍ଧଙ୍କର ଆଖି ଛଳଛଳ ହେଲା । ପାର୍ବତୀ ଭାବିଲା, ବୋଧହୁଏ ସେ ତାଙ୍କର ହଜିଯାଇଥିବା ସେ କାଳର ଅଳ୍ପ-ବୟସର ନିଷ୍କରୁଣ ପୁତ୍ରଟି କଥା ମନେ ପକାଇଲେ । ସେହି ନିଷ୍କରୁଣ କନ୍ଦର୍ପନିନ୍ଦୀ ରୂପର ଆତ୍ମଜ କରୁଣା-ସାଗରଙ୍କୁ । ଆହା-ହା ! ଏବେଯାଏ ବି ତ ପାର୍ବତୀ ତାଙ୍କୁ ସପନ ଦେଖେ । ରାତିରେ ବିଳିବିଳେଇ ଉଠେ । ଆହା, ଅତି ଦୁଃଖୀ ପିତା !

ଛଳଛଳ ଆଖିରେ ପାର୍ବତୀ କହିଲା, "ଆପଣ ଟିକିଏ ଅପେକ୍ଷା କରନ୍ତୁ, ମୁଁ ଟଙ୍କା ଆଣୁଛି ।"

ପାର୍ବତୀ ସଂଲଗ୍ନ କୋଠରିକୁ କୁବେର ବେହେରଙ୍କ ପାଖକୁ ଆସିଲା । ସେ ହିସାବ ଖାତା ଓ ଅନ୍ୟାନ୍ୟ କାଗଜପତ୍ର ଧରି ବସିଥିଲେ । ବିମ୍ବାଧରୀ ଓ ବିଦ୍ୟାଧରୀ ଝିଅ ଦିଓଟି ତ ରାତ୍ରିପାଠଶାଳୀକୁ ପଢ଼ିବାକୁ ଯାଇଥିଲେ । ଖଞ୍ଜା ଭିତରେ ରାନ୍ଧୁଣୀଟିଏ କ'ଣ ପାଇଟି କରୁଥିଲା ।

କୁବେର ପାର୍ବତୀକୁ ଚାହିଁଁ ସେ କହିଲା, "ମୋ'ର ଦୁଇହଜାର ଟଙ୍କା ଲେଡ଼ା, କରଜ ନୁହେ, ସେମିତି, ଅର୍ଥାତ୍ ମୋତେ ଦାନ କର । କ'ଣ କରିବି, ସେକଥା ପଚାରନା ନାହିଁ । ସୁଧ ଦେବି ନାହିଁ କି ପରିଶୋଧ କରିବି ନାହିଁ । ଅର୍ଥାତ୍, ମୁଁ ଭିକ ମାଗୁଛି ।"

କୁବେର ହସିଲେ । କହିଲେ, "ନିଅ, ସବୁ ତ ତମର, ମୁଁ ପଗ୍ରରିବାକୁ କିଏ ! ମୁଁ ଯକ୍ଷଟିଏ, ତମ ଧନର ରକ୍ଷକ । ତୁମେ ତ ବାଜିକର, ଯେମିତି ବଜାଇବ ନାଚିବି ।"

× × × ×

ଲୁହା ବାକ୍ସର ଦୁଇଟି ତାଲା ଖୋଲି ତା' ଭିତର 'ବାକ୍ସ ଫିଟାଇ ଦୁଇଥର ଗଣି, ସେ ପାର୍ବତୀର ହାତକୁ ବଢ଼ାଇଦେଲା । କହିଲା–'ଅମାନତ–ପାର୍ବତୀ ଦେବୀ ବୋଲି ଲେଖିଦେଉଛି ।'

ପାର୍ବତୀ ମୃଦୁକେଇ ହସି କହିଲା, "ସେଇଆ କର, ଅବା ଲେଖି ଦେଉନ, 'କୁବେର ବେହେରା, ମାର୍ଫତ୍ ପାର୍ବତୀ ଦେବୀ, ଏକଦା–ଶ୍ୱଶୁର ଦୟାସାଗର, ଏକଦା ପାର୍ବତୀର ସ୍ୱାମୀ, କରୁଣାକର ବାଲ୍ୟକାଳରୁ ମୃତଙ୍କ ହତଭାଗ୍ୟ ପିତା ।'

ପାର୍ବତୀ ଦୁଇହଜାର ଟଙ୍କା ନେଇ ଉଲ୍ଲସିତ ମୁଖରେ ଦାଣ୍ଡ ଘରକୁ ଆସିଲା । ମନର ଉଲ୍ଲାସର ଆଭା ତା'ର ସୁନ୍ଦର ସ୍ୱାସ୍ଥ୍ୟ ଭରପୂର ମୁହଁରେ ସ୍ପଷ୍ଟ ବିକଶିତ ହେଉଥାଏ । ଭାବୁଥାଏ, ଏତେ ବର୍ଷ ପରେ ସେ ଜୀବନର ଗୋଟିଏ ମହାନ୍ କର୍ତ୍ତବ୍ୟ ସାଧନ କରିବାକୁ ଯାଉଛି ।

ସେ ଦୟାସାଗରଙ୍କ ଆଗକୁ ଯାଇ ଉଲ୍ଲସିତ ସ୍ୱରରେ କହିଲା, ମୋ'ର ସାମାନ୍ୟ ବିଳମ୍ବ ହେଲା, ସେଥିପାଇଁ ମୁଁ କ୍ଷମା ମାଗୁଛି, ନନା ! ମୋ'ର ଦୁଇ ଝିଅ ବିଦ୍ୟାଧରୀ ଓ ବିଦ୍ୟାଧରୀଙ୍କର ବାପା କୁବେର ବେହେରା କ'ଣ ହିସାବରେ ବ୍ୟସ୍ତ ଥିଲେ । ହିସାବ ସରିଲେ, ସେ ଆପଣଙ୍କୁ ଦର୍ଶନ କରିବାକୁ ଆସିବେ ।

"ନନା, ଏ ମୂଲ୍ୟବାନ୍ ସୁନାହାର ସେ ବନ୍ଧକ ରଖିବାକୁ ମନା କଲେ । ପୁଣି କହିଲେ, 'ନନାଙ୍କ ପରି ମହା ପଣ୍ଡିତ ଅଥଚ ଦୁଖୀଙ୍କଠାରୁ ମୁଁ କୌଣସି ସୁଧ ନେବି ନାହିଁ । ତାଙ୍କ ଆନନ୍ଦ ଓ ଅଭାବ ମେଣ୍ଟଣ ହିଁ ମୋ'ର ସୁଧ, ମୂଳ, ସବୁ । ତାଙ୍କର ପାଦର ଧୂଳି ଏ ଘରେ ପଡ଼ିଛି । ସେତିକି ମୋ'ର ଯଥେଷ୍ଟ ।'

ଦୟାସାଗର ଶର୍ମାଙ୍କର ହାତ ଓ ତହିଁରେ ଧରିଥିବା ଟଙ୍କାଥଳି ଥରିବାକୁ ଲାଗିଲା; ତା ସଙ୍ଗେ ସଙ୍ଗେ କମ୍ପିତ ହେଲା ହାତ ଓ ତହିଁରେ ଆଗରୁ ଝୁଲୁଥିବା କେବେ କେଉଁ ରଜାଙ୍କ ଦ୍ୱାରା ପ୍ରଦତ୍ତ ଉପହାର ସେହି ମୂଲ୍ୟବାନ ହାରଟି ।

କମ୍ପିତ ସ୍ୱରରେ ପଚାରିଲେ ପଣ୍ଡିତ ଦୟାସାଗର, ଧର୍ମତଃ ଏକଦା ଯେ ଥିଲେ ତାଙ୍କର ବାଳିକା କୁଳବଧୂ, ସ୍ୱର୍ଗତଃ କରୁଣାସାଗର ପରି ତାଙ୍କର ଏକମାତ୍ର ପୁତ୍ରର ଧର୍ମପତ୍ନୀ ଆଜି ଅନ୍ୟର ଘରଣୀ,, ତାଙ୍କୁ "ଦୁଇହଜାର ଟଙ୍କା ତ ଋଣ ଦେଲ ମା, ଏହି ହାରଟିକୁ ବନ୍ଧକ ରଖିଲ ନାହିଁ, ଦଲିଲ୍ କରାଇ-ନେଲ ନାହିଁ, ମାସକୁ ·ଶତକଡ଼ା କେତେ ସୁଧ ମୋତେ ଜଣାଇଲ ନାହିଁ, ଲେଖାଇ ନେଲ ନାହିଁ ଯେ ?"

ପାର୍ବତୀର ଆଖିରେ ଲୁହ ଢଳ ଢଳ ହେଲା । କଣ୍ଠ ରୁଦ୍ଧ ହୋଇ-ଆସିଲା, କି ଉତ୍ତର ସେ ଦେବ, ଦେଇପାରିବ ! ହେଇଟି, ଆଗରେ ବସିଛନ୍ତି ତା'ର ଶ୍ୱଶୁର, ସତରେ ଦୟାର ସାଗର । ସେ ପାତକିନୀ କି ସେବା ତାଙ୍କର କରିପାରିବ ? ସେବା କରିବାର ସେ ଅଧିକାରିଣୀ ହୋଇ ରହି ନାହିଁ ।

ବୃଦ୍ଧ ଦୟାସାଗର ନୀରବରେ ପାର୍ବତୀର ନଇଁଲା ଦୃଷ୍ଟିକୁ ଲକ୍ଷ୍ୟ କଲେ । ସେ ବନ୍ଧକ ଦେଇଥିବା ମୂଲ୍ୟବାନ ହାରଟି ସେ ହାତରେ ଧରିଛି । ତା'ର ସୁନ୍ଦର ମୁହଁର ଝଟକିଲା ଆଖି ଦିଓଟିରୁ କେଜାଣି କାହିଁକି ଲୋତକଧାର ଝରିଆସୁଛି ।

କାହିଁକି, କାହିଁକି ସତେ ?

ତାଙ୍କ ନୀରବ ପ୍ରଶ୍ନର ଉତ୍ତର ପାର୍ବତୀ ଦେଲା, "ନନା, ଯେଉଁ ଟଙ୍କା ମୁଁ ଆପଣଙ୍କୁ ଦେଲି, ସେତକ ମୋ'ର, ମୋ ପିତାଙ୍କର ଦାନ, କୁବେର ବେହେରାଙ୍କର ନୁହେ । ତା'ଉପରେ ମୋ'ର ପୂର୍ଣ୍ଣ ଅଧିକାର ଅଛି । ସେତକ ମୋ'ର ପିତାଙ୍କର ଦାନ । କୁବେର ବେହେରାଙ୍କୁ ମତେ ସେ ଅର୍ପଣ କଲା-ବେଳେ ଯେଉଁ ଯୌତୁକ ଦେଇଥିଲେ, ପୁଣି କୁବେର ବେହେରାଙ୍କର ପତ୍ନୀ ହୋଇ, ସେବିକା ହୋଇ କର୍ମ କଲା ବେଳେ ସେ ମୋତେ ଯେବେ ଯାହା ଦେଇଛନ୍ତି, ସବୁର ସମଷ୍ଟି ମୁଁ ବେପାରରେ ଲଗାଇବାକୁ ବେହେରାଙ୍କୁ

ଦେଇଥିଲି । ଏତିକି ନୁହେ, ଆହୁରି ଅଛି । ସେହି କୁବେର ବେହେରା ତା'ର ହିସାବ ରଖିଛନ୍ତି ।

"ଭବିଷ୍ୟତରେ, ଠାକୁରେ ଆୟୁଷ ଦେଇଥିଲେ, ବିଦ୍ୟାଧରୀ ଓ ବିଦ୍ୟାଧରୀଙ୍କୁ ବାହା ଦେଲାବେଳେ ତାଙ୍କ ପାଇଁ ସୁନାର ଗହଣା ତାଙ୍କର ମନ-ପସନ୍ଦିଆ ମୋ'ର କରି ମୁଁ ଗଢ଼ାଇ ଦେଇଥାନ୍ତି...

"ଆପଣ ନିଅନ୍ତୁ, ନନା, ଏତକ ତ ଆପଣଙ୍କର ସମ୍ମାନର ସଙ୍କେତ, ଅମୂଲ୍ୟମୂଲ୍ୟ ।"

ଦୟାସାଗର ହାତ ବଢ଼ାଇ ହାରଟିକୁ ପାର୍ବତୀର ହାତରୁ ନେଲେ । ଅଶ୍ରୁଧାର ଝରିଆସିଲା ଦୁଇ ନେତ୍ରରୁ । ବାଷ୍ପରୁଦ୍ଧ କଣ୍ଠରେ ସେ କହିଲେ, "ତୁଇ ମୋ'ର ହଜିଲା ପୁତ୍ରକୁ ସେପୁରରୁ ବାହୁଡ଼ାଇ ଆଣିଛୁ ମା ପାର୍ବତୀ, ମହାସତୀ ସାବିତ୍ରୀଙ୍କ ପରି । ସେ ଯେପରି ସତ୍ୟବାନଙ୍କୁ ଯମହାତରୁ ଫେରାଇ ଆଣିଥିଲେ, ସେହିପରି ମୋର ପୁତ୍ର କେବଳ ଘଟ ଓ ରୂପ ବଦଳାଇ କୁବେର ବେହେରା ଭାବରେ ଫେରିଆସିଛନ୍ତି ।

"ତୁଇ ମୋ'ର ପୁତ୍ରବଧୂ, ଦୁନିଆ ଏହା ଅସ୍ୱୀକାର କରିପାରିବ ନାହିଁ । ଦେବତାମାନେ ବି ସାକ୍ଷୀ ରହିଥିଲେ । ଯାହା ଆଉ କେହି କରିପାରିଲେ ନାହିଁ, ତୋ'ର ପିତା ସେତକ କରି ପାରିଛନ୍ତି ମୋ'ର ପୁତ୍ରକୁ ମତେ ଫେରାଇ ଦେଇଛନ୍ତି, ମାନସିକ ସ୍ତରରେ ଏହା ସମ୍ଭବ ହୋଇଛି ।

"ମୋ'ର ସବୁ ସମ୍ପତ୍ତିର ଉତ୍ତରାଧିକାରୀ ହେବେ କୁବେର ବେହେରା, ହଁ, ହଁ, କୁବେର ବେହେରା । ସେହି ହେବେ ମୋ'ର ପାଳିତ ପୁତ୍ର । ସ୍ୱର୍ଗତ ପୁତ୍ରର ସ୍ଥାନ ସେ ପୂରଣ କରିବେ, ଆଉ ତୁ ମା ମୋର ପୁତ୍ରବଧୂର । ମା, ମୁଁ ପୁତ୍ରହରା ନୁହେଁ, ମୋ'ର ସମସ୍ତେ ଅଛନ୍ତି । ଦୁନିଆ କହିବ, ମୁଁ ବାଉଳା, କିନ୍ତୁ ମୁଁ କହିବି, ମୁଁ ବାଉଳା ନୁହେଁ;—ଦେଖ ମୋ'ର ବୋହୂ ପାର୍ବତୀ ଦେବୀଙ୍କୁ ଆଉ, ନକ୍ଷତ୍ର ପରି ଝଟକୁଛନ୍ତି ଯେଉଁ ଦୁଇ ନାତୁଣୀ ।"

"ନନା" !

"ଆ, ମା ପାର୍ବତୀ, ମୋ ପାଖକୁ ଆ । ମୋ'ର ଉଇଲ୍ ବା ଇଚ୍ଛାପତ୍ରକୁ ରଦ୍‌କରି, ଅକାମୀ କରି ନୂଆ ଇଚ୍ଛାପତ୍ର କରିବାକୁ ସମୟ ଲାଗିବ ନାହିଁ । ନିଜର ଟଙ୍କା ଦେ'ଣ-ନେ'ଣ କାରବାର ସଙ୍ଗରେ ଭୂମିବାଡ଼ି ଓ ଅନ୍ୟାନ୍ୟ ସମ୍ପତ୍ତିର ରକ୍ଷଣାବେକ୍ଷଣ ଦାୟିତ୍ୱ କୁବେର ବେହେରଙ୍କୁ ଦେବାକୁ ପଡ଼ିବ ।

"ଅବଶ୍ୟ ତୁମର ପିତା ପଣ୍ଡିତ ଶ୍ରୀଯୁକ୍ତ ବିମଳାନନ୍ଦ ଶର୍ମାଏ ଓ ଅନ୍ୟମାନେ ସାହାଯ୍ୟ କରିବାକୁ ତତ୍‌ପର ହେବେ । ବଦଳୁଥିବା ଯୁଗର ରୀତି ସମ୍ବନ୍ଧରେ ସେ ନିଶ୍ଚୟ ଅବହିତ ଓ ସହମତ ।"

ଏତିକି କହି ବୃଦ୍ଧ ଦୟାସାଗର ଉଠି ଠିଆ ହେଲେ । ଧରିଥିବା ମୂଲ୍ୟବାନ ପଥରଜଡ଼ିତ ସୁବର୍ଣ୍ଣ ହାରଟିକୁ ନତମସ୍ତକ ହୋଇଥିବା ପାର୍ବତୀର ବେକରେ ଝୁଲାଇଦେଲେ । କହିଲେ, "ଦେବୀ-ପ୍ରତିମା ପ୍ରାୟ ଦିଶୁଛ ମା ! କୁବେରଙ୍କୁ ମୁଁ ଦେଖିବାକୁ ଚାହେଁ, ଆଉ ମୋ'ର ନାତୁଣୀ ବିମ୍ବାଧରୀ ଓ ବିଦ୍ୟାଧରୀ ।"

"ପୁଣି ମୁଁ ଆସିବି, ମା ।"

ସମସ୍ତେ ପ୍ରଣତ ହୋଇ ଦୟାସାଗରଙ୍କର ପଦ ସ୍ପର୍ଶ କଲେ । କେବଳ ପାର୍ବତୀର ଚକ୍ଷୁରେ ଲୁହ ଢଳଢଳ ହେଲା । ମାନସ ଆଗରେ ଉଭା ହେଲା ଗୋଟିଏ ଚଉଦ-ପନ୍ଦର ବର୍ଷର ସୁନ୍ଦର ସ୍ୱାସ୍ଥ୍ୟବାନ୍, ଶୁଣାଶୁଣିରେ ବୁଦ୍ଧିମାନ୍ ଓ ସଭିଙ୍କର ଆଦର-ସ୍ନେହର ସ୍ନେହୀ ବାଳକଟିଏ କରୁଣାସାଗର ନାମରେ ସମସ୍ତଙ୍କ ପାଖରୁ କୁଆଡ଼େ ଆଦର ପାଇ ନିଷ୍ଠୁର ହୋଇ ମହାପ୍ରୟାଣ କଲେ ।

ଦୟାସାଗର ବୃଦ୍ଧ ନଦୀ ଖଣ୍ଡିତଳ ବିସ୍ତୀର୍ଣ୍ଣ ବାଲୁକାର ଲହଡ଼ିଆ ବାଲୁକା ଶଯ୍ୟାର ପଛଆଡ଼େ ଚଲାବାଟରେ କେଉଁଠି ଅଦୃଶ୍ୟ ହେଲେଣି । ଖଣ୍ଡି ଉପରେ ଖଣ୍ଡେ ଦୂରରେ କୋଚିଲା ଗଛର ଛାଇତଳେ ଠିଆହୋଇ ପାର୍ବତୀ ବାଲିର ବିସ୍ତୃତିକୁ ଚାହିଁ ଦେଖୁଛି, ଦୟାସାଗର ବୃଦ୍ଧ ପାରିହୋଇ ସେପାଖର ବାଟ ଧରିଲେ କି ନାହିଁ ।

କୁବେର ପଛରୁ ଯାଇ ତା'ର କାନ୍ଧ ଉପରେ ହାତ ରଖିଲା । ସେ ମୁହଁ ବୁଲାଇ ଚାହାନ୍ତେ ପଚାରିଲା, "ସଙ୍ଗରେ ତ ଚିହ୍ନାଜଣା ଲୋକ ଯାଇଛି, ତମେ ବ୍ୟସ୍ତ କାହିଁକି ? ସେ ଲୋକଟି ରଥ ଗୋସାଇଁଙ୍କୁ ତାଙ୍କ ଗ୍ରାମରେ ଛାଡ଼ିଦେଇ ଆସିବ ।

ପାର୍ବତୀ କହିଲେ, ସେଇ ଲୋକଟାକୁ ମୋ'ର ଡର । ଦୁର୍ବଳିଆ, ଥୁରୁଥୁରିଆ ବୃଦ୍ଧଟିକୁ ଦେଖିଲେ...

କୁବେର କହିଲା, ଏ ଦୁନିଆରେ ସବୁ ସମ୍ଭବ, ପାର୍ବତୀ ! ତଥାପି ମଣିଷକୁ ବିଶ୍ୱାସ କରିବାକୁ ତ ହେବ । ତେଣିକି ଯାହା ଘଟୁଥାଉ । ବାପ-ପୁଅ ଭିତରେ ଏକା ମାଆର ପେଟରୁ ଜନମିଥିବା ଭାଇ ଭାଇ ମଧ୍ୟରେ ମଧ୍ୟ ଚଂଚକତା ସୃଷ୍ଟି ହେଉଛି, ମନ ଫଟାଫଟି, ଯା ମୁହଁ ଏଣିକି ତ ତା' ମୁହଁ ତେଣିକି । ଲୋକେ ଦୋଷ ଦିଅନ୍ତି ଘରଣୀମାନଙ୍କର । କୁଆଡ଼େ, ପାଖରେ ଶୁଏ କାନରେ କହେ, ତା କଥା କି ଅନ୍ୟଥା ହୁଏ ?

ପାର୍ବତୀ କହିଲା"କିଜାଣଟି ! ଏବେ ଘରକୁ ଫେର । ନନା ଭଲରେ ଭଲରେ ତାଙ୍କର ଘରେ ପହଞ୍ଚନ୍ତୁ ଏହି ଖବର ନେଇ ତମର ବିଶ୍ୱାସୀ ଲୋକଟି ଫେରିଆସୁ, ଏତିକି ଶୁଣିଲେ ଆମେ ନିଶ୍ଚିନ୍ତ ହେବା ।"

ଦିହେଁ ଘରକୁ ବାହୁଡ଼ିଲେ ।

× × × ×

ବାହୁଡ଼ି ଆସି ମୂଲିଆ ଖବର ଦେଲା, ଭରୁଆମାନେ ମଧ୍ୟ କହିଲେ ଯେ ବୃଦ୍ଧ ଦୟାସାଗର ଭଲରେ ପହଞ୍ଚିଲେ । ତାଙ୍କର ବିଳମ୍ବ ହେବା ଦେଖି ପାର୍ବତୀ ଓ କୁବେର ବ୍ୟସ୍ତ ହେବାକୁ ଲାଗିଲେ । ପାର୍ବତୀ ଉଦ୍‌ବିଗ୍ନ ହୋଇ କହିଲା କୁବେରକୁ, ତୁମେ ଶୁଣିଛ ତ ନନାଙ୍କର ଦୁଇ ନାତି ଅଜୟ ଓ ବିଜୟଙ୍କର ଢଙ୍ଗ । ସେମାନଙ୍କର ମା ସୁମିତ୍ରା ଦେବୀଙ୍କର ବୋଲ କାହିଁକି ସେମାନେ ମାନିବେ ! କୌଣସି ଘଟଣା ତ ଲୁଚିଛପି ରହେ ନାହିଁ । କାଉ କୋଇଲି ଦେଖିଲା ଘଟଣା, ଶୁଣିଲା କଥନ କେଜାଣି କେମିତି ପ୍ରଘଟ ହୁଏ । ବିଜୁଳିରୁ ଅଧିକ ବେଗରେ ବୋଲି ଜାଣ.........

କୁବେର କହିଲା, "ତମର ମନର ଉଦ୍‌ବେଗ ମୁଁ ଅନୁଭବ କରି-ପାରୁଛି । ବେଶି ବେଳ ଖରଚ ନକରି କହ ତ, ମତେ କ'ଣ କରିବାକୁ କହୁଛ ?"

"ତୁମେ ତାଙ୍କ ଗ୍ରାମକୁ ଯାଅ । ନନାଙ୍କ ସଙ୍ଗେ ଦେଖା କରିବ, ଖବର ବୁଝିବ । ଯଦି ସେ ଇଚ୍ଛା କରନ୍ତି, ଏଠାକୁ ଚାଲି ଆସିବେ, କହିବ, ମୁଁ କହିଛି,-

ତାଙ୍କର ସେବାରେ ମୁଁ କେବେ ତ୍ରୁଟି କରିବି ନାହିଁ । ନାତୁଣୀ ଦୁହିଙ୍କ ସଙ୍ଗେ ଖେଳି ଓ ଦେବପୂଜା ଏବଂ ପୁରାଣ-ପାଠ କରି, ମୋ'ପରି ପାତକିନୀକୁ ଶୁଣାଇ ଆନନ୍ଦରେ ବେଳ କଟିବ । ଯେବେ ଯୁଆଡ଼େ ଯିବାକୁ ମନହେବ, ସେ ଯିବେ, ଆସିବେ, କେହି ବାଧା ଦେବେ ନାହିଁ । ପୁଣି ଅପାଙ୍କ ପାଖକୁ ଫେରି ଆସିବାକୁ ମନ କଲେ ତା'ର ବ୍ୟବସ୍ଥା କରହେବ । ଯେପରି ତାଙ୍କର ଖୁସି ।"

କୁବେର ଖୁସି ହେଲା । ହସହସ ହୋଇ ଖୁସିରେ କରଯୋଡ଼ି କହିଲା, "ଆଚ୍ଛାଗୋ-ଗୋ ଇନ୍ଦ୍ରାଣୀ-ରୂପିଣୀ ପାର୍ବତୀରାଣୀ, ମୁଁ ତମର ଧନରକ୍ଷକ ଯକ୍ଷଟା, ଆଦେଶ ନ ମାନିବାକୁ ମୋ'ର ସାଧ୍ୟ କାହିଁ ? ଯିବି, ଶାସନ ଗ୍ରାମକୁ ଯିବି । ଦୟାସାଗର ନନାଙ୍କ ସଙ୍ଗେ ଭେଟ କରିବି । ସେ ଯେପରି ନିର୍ଦ୍ଦେଶ ଦେବେ ସେପରି କରିବି ।"

ପରଦିନ ସକାଳେ, ନିଜେ ସଜବାଜ ହୋଇ ସଙ୍ଗରେ ଯଥେଷ୍ଟ ଧନ, ଭରୁଆ ଦିଓଟିଙ୍କ ହାତରେ ପାଚିଲା କଦଳୀ, ଉଖୁଡ଼ା, ମିଷ୍ଟାନ୍ନ ଓ ନିରେଳା ଗୁଆଘିଅ ଠେକିଏ ନେଇ, ଦୁର୍ଗାଙ୍କର ନାମ ଜପ କରି କୁବେର ଶାସନ ଗ୍ରାମ-ଅଭିମୁଖରେ ଯାତ୍ରା କଲେ । ଭରୁଆଙ୍କୁ ଛାଡ଼ି ଆଉ ଜଣେ ବୋଝିଆ, ପୁରୋହିତେ ବାଜପତି ଓ ନାପିତ ଫଗୁ ନେପାକ୍ ମଧ୍ୟ ସଙ୍ଗରେ ଗଲେ ।

ସବୁ ପ୍ରକାର ସମ୍ଭାବ୍ୟ ଅପ୍ରୀତିକର ପରିସ୍ଥିତିରୁ ଉଦ୍ଧାର ପାଇବାକୁ, ଅବା ସେହି ପରିସ୍ଥିତିକୁ ପିଠେଇ, ନିଲଠା ପଣରେ ସହିବାକୁ ସେମାନେ ପ୍ରସ୍ତୁତ ହୋଇଥିଲେ ।

ଫଗୁବେଜ୍ ନାପିତ ଓ ଶାସନ ଗ୍ରାମର ଅନ୍ୟ କେତେଜଣ ଉତ୍ସାହୀ ଯୁବକଙ୍କ ଜରିଆରେ ସେହି ଗ୍ରାମର ପଞ୍ଚମାନଙ୍କୁ ସଭସ୍ଥଳକୁ ନିମନ୍ତ୍ରଣ କରଗଲା । ତୂରୀ ଫୁଙ୍କାଇ ଆବାଳ-ବୃଦ୍ଧ-ବନିତା ସମସ୍ତଙ୍କୁ ଜଣାଇ ଦିଆଗଲା ଯେ ଗ୍ରାମମଝିର କଦମ୍ବ-ମହାଦ୍ରୁମ ତଳେ ହନୁମାନଙ୍କର ସିନ୍ଦୂର-ଲେପିତ ମୂର୍ତ୍ତି ଆଗରେ, ପୁଣି ବିନୋଦବିହାରୀଙ୍କର ମନ୍ଦିର ଆଗରେ, ଯାହାର ମଧ୍ୟରେ ରାଧାକୃଷ୍ଣଙ୍କର ଯୁଗଳ-ମୂର୍ତ୍ତି ବିରାଜିତ, ତାହାରି ଆଗରେ କେଉଁଥିପାଇଁ ସଭା ହେଉଛି; ଡାକରା ପଡ଼ିଛି । ଅବଶ୍ୟ ଭୋଗରାଗ ହେବ । ପ୍ରସାଦରୁ କିଛି ଅବଶ୍ୟ ବଣ୍ଟନ କରାଯିବ ।

ସେତକ ଅସଲ ଆକର୍ଷଣ । ବାକି ଯାହା ହେବ, କଥା କଟାକଟି, ବିଗ୍ରର ମସ୍ତୁଧା, ସବୁ ଖାଲି ଶୁଣିବା କଥା । 'ମାଧିଆ ଭଇ, ସବୁ କଥାକୁ ହୋଇ ହୋଇ'ପଣ । ବାଇଆର କି ଯାଏ, ନା, ବାଆ କଲେ ବସା ଦୋହଲୁଥାଏ । କିଛି ନ ଜାଣି ସବୁ ଜାଣିଲାର ଢଙ୍ଗରେ ମଧୁରିଆ ହସି ମୁଣ୍ଡ ଟୁଙ୍ଗାରିଲା ଢଙ୍ଗ ।

ପଞ୍ଚମାନେ ତ ଆସିଲେ । କିଏ ଭରି ଗଉଁରେ ମୁହଁ ଗମ୍ଭୀର କରି, ଯିଏ କହିବ ଯେ ଜ୍ଞାନର ଭଣ୍ଡାର, ଆଉ ଜଣେ ମୁଚୁକି ହସିଆ–ଅର୍ଥାତ୍ 'ଆହେ ପାଣ , ତମେ ଯହିଁପାଇଁ ନସର ପସର, ଆମେ ତ ସେକଥା ଜାଣୁ , ହଉ ବୁଝିବା । ଆଉ ଜଣେ ପୃଥୁଳକାୟ ସଭ୍ୟ ଅଫିମ-ଭକ୍ତିଆ ଆଗରୁ ସବୁ ଉଦନ୍ତ ଜାଣନ୍ତି ଓ ଧୀରମନ ସ୍ଥିର ବୁଦ୍ଧିରେ ମନେମନେ ସିଦ୍ଧାନ୍ତରେ ଉପନୀତ ହୋଇସାରିଥାନ୍ତି । କିନ୍ତୁ ସମସ୍ତଙ୍କର ଭଷଣ, ତର୍କବିତର୍କ ଓ ପ୍ରସ୍ତାବର ଝଡ଼ ଏବଂ ଗୋଟାଏ ମୋଟାମୋଟି ସିଦ୍ଧାନ୍ତର ପ୍ରସ୍ତାବ ନ ଶୁଣିବାଯାଏ ମୁଖରୁ ହସ ଛଡ଼ା ବଚନ ବାହାରେ ନାହିଁ । ସିଦ୍ଧାନ୍ତ ହେବା ପୂର୍ବରୁ ପ୍ରସ୍ତାବ ଯଦି ମନକୁ ପାଇଲା ତ ସମ୍ମତିସୂଚକ ବାଣୀ–'ମୁଁ ରାଜି' । ମନକୁ ନ ପାଇଲେ, ବଜ୍ରବାଣ ହାଣନ୍ତି–'ଆମେ ଅସମ୍ମତ, କାରଣ ଶୁଣନ୍ତୁ ଓ ପୁଣି ସ୍ଥିର ମନରେ ବିଗ୍ର କରନ୍ତୁ, ଆଉ ଥରେ ମସ୍ତୁଧା ଦିଅନ୍ତୁ ।'

ସେଇଆ ହୁଏ । ବିଗ୍ରର ଓଲଟିଯାଏ ।

ସେଦିନ ପଞ୍ଚମାନଙ୍କ ଉପସ୍ଥିତିରେ ଅତି ପରିଚିତ ମହାଜନ କୁବେର ବେହେରା ଜଣାଣ କଲା, "ଅଧିକ ସମୟ ଆପଣମାନଙ୍କର ନଷ୍ଟ କରିବାକୁ ମୁଁ ଗ୍ହେ ନାହିଁ । ଦଧିବାବନ ମହାପ୍ରଭୁଙ୍କ ପାଖରେ ନୈବେଦ୍ୟ କରାଇ ମିଷ୍ଟାନ୍ନ ଇତ୍ୟାଦି ପ୍ରସାଦ ଏଠାକୁ ଆଣିବାକୁ ମୁଁ ପଠାଇସାରିଛି । ମୋ'ର ଧର୍ମପତ୍ନୀ ଶ୍ରୀମତୀ ପାର୍ବତୀ ଦେବୀ ଶ୍ରୀଯୁକ୍ତ ଦୟାସାଗର ରଥଙ୍କର ପୁତ୍ରବଧୂ ଥିଲେ । ସେ ସ୍ୱର୍ଗୀୟ କରୁଣାସାଗରଙ୍କୁ ବାଲ୍ୟାବସ୍ଥାରେ ବିବାହ କରିଥିଲେ ।

"ବିବାହ ପରେ ଶିଶୁ କନ୍ୟାଟି ପାର୍ବତୀ ତାଙ୍କର ପିତାଙ୍କର ଆଳୟକୁ ନଦୀ ପାରି ବଡ଼ ଶାସନ ଗ୍ରାମକୁ ଫେରିଯାଇଥିଲେ । ମୋ' ଜାଣିବାରେ ଏଇଆ । ଘରଯୋଗ୍ୟା ହୋଇ ଶ୍ୱଶୁରାଳୟକୁ ଅର୍ଥାତ୍ ଏହି ଗ୍ରାମକୁ କନ୍ୟା ପୁଣି ପିତୃଗୃହରୁ ଫେରି ଆସିବା ପୂର୍ବରୁ କରୁଣାସାଗର କି କରୁଣାକର ଆପଣମାନେ

ଭଲ କରି ଜାଣନ୍ତି, ଅତି ନିଷ୍କରୁଣ ହୋଇ ଅଳ୍ପବୟସ୍କା ଅନୂଢ଼ା କନ୍ୟା ପାର୍ବତୀକୁ ବିଧବା (ପ୍ରକୃତରେ ବିଧବା ନୁହେ, ବିବଶ) କରି ସେପୁରକୁ ଗ୍ଳଲିଗଲେ ।

"ସାଗଜୀବନ ପାର୍ବତୀ ଦେବୀ ଆପଣମାନଙ୍କର ଗେହ୍ଲା ଝିଅଟି, ଯାହାକୁ ଏହି ଦାଣ୍ଡରେ ଦିଅଁମାନଙ୍କ ଆଗରେ ହସାଇ କାଖେଇ ଖେଳେଇ ବଢ଼ାଇଥିଲ, ତାକୁ ବୋହୂ କରି ଶର୍ମାଙ୍କ ଘରୁ ଆଣିଲା ପରେ, ସେ କେଉଁ ଦୁଃଖରେ ବାର ନିର୍ଯାତନା ସହିବାକୁ ଫେରି ଆସିଥାନ୍ତା ଏ ଗ୍ରାମକୁ ?

"ସେହି ପାର୍ବତୀ ଦେବୀ ମୋ'ର ପତ୍ନୀ, ମୋ'ର ସବୁ ଧନସମ୍ପତ୍ତି ଓ ଭୂମିବାଡ଼ିର ଅଧିକାରିଣୀ । ଆଉ ଲୋଡ଼ା ନାହିଁ ।

"ଯେଉଁ ଭୂ-ସମ୍ପତ୍ତି ଦୟାସାଗର ମହାଶୟ ବଧୂରୂପେ ତାଙ୍କ ନାମରେ ରେଜିଷ୍ଟ୍ରୀ କରିଥିଲେ ସେ କଲେ ଦଧିବାବନ ଗୋସେଇଁଙ୍କୁ ମୁଁ ଅର୍ପଣ କରୁଛି ।"

ଦତ୍ତପତ୍ର ତ ଲେଖା ହେଲା । ହେଇଟି, ମୁଁ ସ୍ୱାକ୍ଷର କରୁଛି ମୋ ତରଫରୁ ଏବଂ ପଣ୍ଡିତ ଦୟାସାଗରଙ୍କର ବିଧବା ବଧୂ ( ଏବେ ଯେ ମୋ'ର ସ୍ତ୍ରୀ ) ଶ୍ରୀମତୀ ପାର୍ବତୀ ଦେବୀ 'ଓ ପଣ୍ଡିତ ରଥଙ୍କର ଦୁଇ ନାତୁଣୀ ଯିଏ ପାର୍ବତୀଙ୍କର କନ୍ୟା ଶ୍ରୀମତୀ ବିଦ୍ୟାଧରୀ ଓ ଶ୍ରୀମତୀ ବିଦ୍ୟାଧରୀ ଦେବୀ ( ନାବାଳକ ଦୁଇକନ୍ୟା ) ପିତା କୁବେର ବେହେରା ।

ପଢ଼ି ଶୁଣାନ୍ତେ, ସମସ୍ତେ 'ହରିବୋଲ ଦେଲେ; ହରିହରି ବୋଲରେ ଭଇ, ହରିହରି ବୋଲ' । ସମସ୍ତେ ପାଟି କରି ଉଠିଲେ । ଦତ୍ତ-ପତ୍ରର ନକଲ୍‌ଟିଏ ପଞ୍ଚର ସଭପତିଙ୍କ ପାଖରେ ରହିଲା । ମୂଳ ଦଲିଲ୍ ରେଜିଷ୍ଟ୍ରିହବା ଆଗରୁ ଦୟା-ସାଗରଙ୍କ ଅନୁରୋଧକ୍ରମେ ଠାକୁରଙ୍କ ଗହଣା ବାକସରେ ରହିଲା ।

ଚାବି ରହେ ପୁରୋହିତଙ୍କ ପାଖରେ, ପଇତାରେ ଝୁଲେ । ଲେଖାପଢ଼ି ହେଲା । ପଞ୍ଚ ଦସ୍ତଖତ କଲେ । କାଗଜ ନେଲେ ଛାମୁକରଣେ ।

ସେଇଠୁ, ମିଷ୍ଟାନ୍ନ ବଣ୍ଟନ । ହରିବୋଲ୍ । ଯିଏ ଯୁଆଡ଼େ ଛୁ । ବାହା ସଇଲେ ବେଦି ମୁହଁ ପୋଡ଼ା ପରି, କିଏ ପଗ୍ଚରୁଛି କୁବେର ବେହେରା ଓ ତାଙ୍କର ଲୋକଙ୍କୁ । ଯିଏ ତ ଯୁଆଡ଼େ ଛୁ । କରୁଣାସାଗର ପେଟେ ଖଜୁରୀ ରସ ପିଇ ଠା'କରେ ଦୁଇଜଣ ସାଙ୍ଗଙ୍କ ପାଖେ ବସି ରକ୍ତଚ୍ଚଉଳ ଗ୍ରୋବାଉଛନ୍ତି ।

ତାଙ୍କରି ଡରରେ ଦୟାସାଗର ଭରସିକରି କୁବେର ବେହେରଙ୍କୁ ତୋରଣି କଂସାଏ ପିଇବାକୁ ବି ଡାକିପାରୁ ନାହାନ୍ତି । ମନ ଛଟପଟ । ସେ ଖୁସି ଯେ ତାଙ୍କର କୌଶଳ କାର୍ଯ୍ୟକାରୀ ହେଲା । ଠାକୁର ସମ୍ପତ୍ତି ଅନ୍ତତଃ ବଞ୍ଚିଗଲା । ଯାବତ୍ ଚନ୍ଦ୍ରାର୍କେ ଦେବତାଙ୍କର ସେବାରେ ଲାଗିବ । ପୁଣି ପୁରୁଷାନୁକ୍ରମେ ଦୟାସାଗର ତଥା କୁବେରଙ୍କର ନାମ ଲୋକେ ସ୍ମରଣ କରୁଥିବେ ।

ବୃଦ୍ଧ ଦୟାସାଗର ତାଙ୍କର ଚିକିଚିକି ଚନ୍ଦାମୁଣ୍ଡ ଓ ଅଦ୍ୟାପି ରହିଥିବା ଧଳା ଓ କଳା ମିଶ୍ରିତ କେଶରେ ହାତ ଚଲାଇ ଚିନ୍ତା କରିବାକୁ ଲାଗିଲେ,— ପାପିୟସୀ ପାର୍ବତୀ ତା'ର ଜାତି ଓ ଗର୍ହିତ କାମପାଇଁ କ'ଣ ନରକ-ଗାମିନୀ ହେବ ନାହିଁ ! କେଉଁ ପାପକର୍ମ କରିଥିଲା ବୋଲି ତ ନାରୀଜନ୍ମ ପାଇଲା । ନାରୀ ହୋଇ ବୋଧହୁଏ ଗୁରୁଜନମାନଙ୍କ ପ୍ରତି ଅଭକ୍ତି ଦେଖାଇଲା, ପୁଣି ସ୍ୱାମୀଙ୍କ ସେବାରେ ଅବହେଳା କଲା ବୋଲି ବାଲ୍ୟ ବିଧବା ହେଲା, ଏ ଜନ୍ମରେ ଅକୂଳରେ ପଶିଲା । ଏଇ ଗୋଟିଏ ଜନ୍ମର ଅଳପ ପୁଣ୍ୟ ପାଇଁ କ'ଣ ମୁକ୍ତି ପାଇବ ?

କ'ଣ ତାଙ୍କର ମନରେ ଅଛି କୁବେର ବୁଝିପାରିଲା ନାହିଁ । କାନରେ କିଏ ତାକୁ ଯେମିତି କହିଦେଲା, 'ଆରେ ହେ, ଡରକି ଥିବୁଟି, ଗୁଣ୍ଡିଆଏ ପାଇଲା ଗାଡ଼ିଆ ବୁହାନ୍ତି । ମୀନ ନ ପାଇଲେ ମୁହଁ ନେଫଡ଼ି ଛୁ କରନ୍ତି ।'

ଏତିକିବେଳେ ତମର ପେଟ କାମୁଡ଼ିବା ଉଚିତ । ପଡ଼ିଆକୁ ଯିବା ବାହାନାରେ କର ଛୁ, ପୋଖରୀ-ହୁଡ଼ା-ତଳର ଅଗମାକୁ, ଏଇ ବାହାନା । ରହିଲେ ଜବାବ ଦେବ । ହଁ ନ କହିନା କହିବା ସହଜ ନୁହେ । ମୁହଁ ମୁଲାଇଲା, ହଁ କଲେ ମଲ; ଦେଲ ତ ଭଲ, ଅବା ନୋହିଲେ 'ଘରେ ନାହାନ୍ତି' କହିବାକୁ କହି କହି, ବାରିଆଡ଼େ ଲୁଚିଲ । ନିବୁଦ୍ଧିଆ ଚାକର ହେଉ ବା ଆଉ କେହି ହେଉ ଆଗନ୍ତୁକକୁ ଯାଇ ଦାଣ୍ଡରେ କହନ୍ତି, 'ବାବୁ କହିଲେ, ସେ ଘରେ ନାହାନ୍ତି ।'

ଏପରି ବେପାର ହେବ କାହିଁକି ? ବିଦାୟ ହୋଇଯିବା ଭଲ । ଏହା ବିଗ୍ଭର କରି କୁବେର ବେହେରା ଦୟାସାଗରଙ୍କଠାରୁ ବିଦାୟ ନେଲା । ଗ୍ରାମ ଦାଣ୍ଡରେ ଲୋକେ ତାଙ୍କୁ ଅପେକ୍ଷା କରି ରହିଥିଲେ ।

× × × ×

କୁବେର ନିଜିନିଖି କରି ସବୁ ଘଟଣା ଓ ତା'ର କରାମତି ଅତି ବାହାଦୁରୀ କରି ପାର୍ବତୀ ଆଗରେ ଗପିଲା । ସେ ମନେକରିଥିଲା ଯେ ପାର୍ବତୀ ଅତି ଖୁସି ହେବ ଓ ତା'ର ବୁଦ୍ଧିକୁ ନିଶ୍ଚୟ ପ୍ରଶଂସିବ ।

କିନ୍ତୁ ଫଳ ହେଲା ବିପରୀତ । ପାର୍ବତୀ ମୁହଁ ଫଣ ଫଣ କଲା । କୁବେରକୁ ଚିନ୍ତିତ କରିବାକୁ ସେ କିଛି ସମୟ ମୌନ ରହିଲା । ସେଇଠୁ ଦୀର୍ଘଶ୍ୱାସ ଛାଡ଼ି ସେ ପୁଣି କହିଲା, "ମୁଁ ସମ୍ପର୍କ ସମ୍ପୂର୍ଣ୍ଣ ସେ ଗ୍ରାମ ଓ ଘରଠାରୁ ଛିଣ୍ଡାଇ ଦେବାକୁ ତମକୁ ସେ ଗ୍ରାମକୁ ଥରେ ମାତ୍ର ପଠାଇଥିଲି । ତୁମେ 'ବାହା ବାହା' ନେଇ ପ୍ରଶଂସା ଶୁଣି , ହୁଏତ କିଛି ସମ୍ମାନ ପାଇ ବଡ଼ପଣିଆ ଗୋଟାଇ ମନ ମୋଟାଇ ଫେରିଛ । କିନ୍ତୁ ଏ ଘରକୁ କେବଳ ମୋ'ର ସେକାଳ ଶ୍ୱଶୁର ଦୟାସାଗର ଓ କେବଳ ତାଙ୍କ ଘର ନୁହେ, ଗ୍ରାମବାସୀମାନଙ୍କ ପାଇଁ ବି ଅଲୋଡ଼ା ଲଜ୍ଞାଳର ବାଟ ଫିଟାଇଲ ।"

"ଏପରି କାହିଁକି ଭାବୁଛ ?"

"କାରଣ, ତମେ ବହୁତ ଅଲଣା ସ୍ନେହ ସମ୍ମାନ ଅଯଥା ଗୋଟାଇ ଆଣିଛ । ଏଣିକି ସେ ଗ୍ରାମର ସବୁ ଅଭାବୀ ତାଙ୍କର ଏକଦା ବୋହୁ ଏବେ କୁବେର ବେହେରା ମହାଜନଙ୍କଠାରୁ ବିନା ଅମାନତ ଓ ବିନା ସୁଧରେ ଧନ କରଜ ନେବାକୁ ଆସିବେ ।

"ତାଙ୍କର ବିଧବା ବୋହୁର ବର ତୁମେ, ନ ଦେଇ ଯିବ କୁଆଡ଼େ ? ଯାହା ଦେବ ସେତକ ବୁଡ଼ିଲା ବୋଲି ଜାଣ ।"

କୁବେର ଉଚ୍ଚ ସ୍ୱରରେ ହସିଉଠିଲା । କହିଲା, "କୁବେରର ଧନ ସଜ-ଗୋବର ଲଣ୍ଡା ପରି, ଏତକ ଜାଣ ତ । ଯେଉଁଠି ପଡ଼ିବ ଉଠିଲା ବେଳକୁ ପୂଜାଏ ବାଲି କାମୁଡ଼ି ଉଠିବ । ସେଥିରୁ ମୁଁ ପରିତ୍ରାଣ ପାଏ ନାହିଁ । ଦଶ ଟଙ୍କା ଉଠାଇଲି କେଉଁ ଜରୁରୀ କାମରେ ତ ଠିକଣା ଥାନରେ ପଇଠ କରେ ଠିକ୍ ବେଳରେ ସୁଧ ପାଞ୍ଚ ମିଶାଇ ପନ୍ଦର ଟଙ୍କା ।"

ପାର୍ବତୀ ହସିଲା । ପଚାରିଲା, "କାହିଁକି ଏପରି କର ମ ? ଏତେ ଧନ କ'ଣ ହେବ ?"

କୁବେର କହିଲା, "ସବୁ ଧନ ରଖିଛି ମୋ'ର ଦୁଇଝିଅ ବିଦ୍ୟାଧର' ଓ ବିଦ୍ୟାଧରୀଙ୍କ ପାଇଁ । ଧନ ଥିଲେ, ଯୌତୁକ ଦେଇପାରିଲେ ସବୁ ସମ୍ଭବ ହୁଏ, ପାର୍ବତୀ ।"

—ହଁ, କ'ଣ ସ୍ୱଦେହରେ ସ୍ୱର୍ଗକୁ ଯିବାକୁ ଚାହୁଁଛ ? ଯୁଧିଷ୍ଠିର ମହାଭାରତ ସମର ଜିଣି, ଅଗଣନ ଯୋଦ୍ଧାଙ୍କୁ ମରାଇ, ରାଜ୍ୟ ଜିଣିଲେ । କୁଆଡ଼େ ମହାଭାରତ ଯୁଦ୍ଧରେ ଭାରତବର୍ଷର ସକଳ ଯୋଦ୍ଧାଙ୍କର ମରଣ ହୋଇଥିଲା । ପାଣ୍ଡବ ପାଞ୍ଚଭାଇ ସେମାନଙ୍କର ପତ୍ନୀ. ଦ୍ରୌପଦୀଙ୍କୁ ଓ କୁକୁର ବେଶରେ ଧର୍ମଙ୍କୁ ସଙ୍ଗରେ ଧରି ହିମାଳୟ ଚଢ଼ି ସ୍ୱର୍ଗକୁ ଯାଉଥିଲେ । ପର୍ବତରୁ ଜଣ ଜଣ କରି ଖସି ଯାଇ ପାଣ୍ଡବ ତଳକୁ ପଡ଼ି ସେପୁରକୁ ଗଲେ । ଶେଷକୁ ରହିଲେ ଏକା ଯୁଧିଷ୍ଠିର......।

ସେକାଳେ ଧାରଣା ଥିଲା, ସ୍ୱର୍ଗକୁ ସିଧାସଳଖ ସେଇଠୁ ବାଟ । ଏ ଯୁଗର ଲୋକେ ଜାଣିଲେଣି, ଦେଖି ଆସିଲେଣି, ସେଠାରେ କେବଳ ତୁଷାର । ବୃକ୍ଷଲତା ଓ ଜୀବନ୍ତ ପ୍ରାଣୀର ସତ୍ତା ନାହିଁ । ଦେବତାମାନେ ପୋଥିପୁରାଣ ଭିତରେ ଓ ବିଶ୍ୱାସ କରୁଥିବା ମଣିଷଙ୍କ ମନ ଭିତରେ ଅଟ୍ଟାଳିକା ଗଢ଼ି ବାସ କରୁଛନ୍ତି ଓ ଅମୃତ ପାନ କରୁଛନ୍ତି ଶୂନ୍ୟ ଗଙ୍ଗାରୁ, ତ୍ରିବେଣୀ ଘାଟରୁ, ଯେଉଁଠି ଗଙ୍ଗା, ଯମୁନା ଓ ସରସ୍ୱତୀଙ୍କର ମିଳନ ସ୍ଥଳ । ପିଣ୍ଡ-ବ୍ରହ୍ମାଣ୍ଡରେ ଅବସ୍ଥିତ । ଚିଲମ୍ ଧରି ଗଞ୍ଜିକାର ଧୂଆଁ ଶୋଷା ଭକ୍ତମାନେ କହନ୍ତି, 'ଏକା ଗୁରୁସେବା କଲେ ଜାଣିବ, ଦେଖିବ ଓ ମରଣ ପରେ ସ୍ୱର୍ଗକୁ ଯିବ ।'

ଦିନେ କୁବେର ଅତି ଆଗ୍ରହରେ ପୁଣି ଉତ୍ସାହରେ ପାର୍ବତୀ ଆଗରେ ଏପରି ଗପୁଥିଲା, ମାଇ-ସଞ୍ଜବେଳେ । କେତେଦିନ ହେଲା ଦି' ପହରେ ସେ କରଜ ଅସୁଲ ପାଇଁ ତାଗିଦା କରିବାକୁ ଠେଙ୍ଗାଟାଏ ଧରି ଓ୍ୱା ଜଣେ ମୂଲିଆଙ୍କୁ ସାଙ୍ଗରେ ନେଇ ଯାଉଛି ଯେ ଫେରୁଛି ସଞ୍ଜରେ । କେବେକେବେ ସେ ରାତି ବି କରୁଛି ।

ପାର୍ବତୀ ମୂଲିଆଠାରୁ ଖବର ପାଇଲା ଯେ ଯେଉଁମାନେ ଖାତକ, କରଜ ଶୁଝିବାର କଥା, ସେମାନେ କାହୁଁ ଜଣେ ବାବାଜିଙ୍କୁ କେଉଁଠୁ ଆଣି, ତାଙ୍କର ପ୍ରସାଦ କହି ଚିଲମରେ ଗଞ୍ଜା ଟାଣୁଛନ୍ତି । କୁବେରବାବୁଙ୍କୁ ତାଙ୍କ ଚେଲା କରାଇବାକୁ ଚେଷ୍ଟା କରୁଛନ୍ତି । କୁଆଡ଼େ ବାବାଜିଙ୍କୁ ତ୍ରିପୁର କଥା,

ତ୍ରିକାଳ କଥା ଜଣା । ହେଲେ, ଭକତ ନ ହେଲେ ସେ ଗୁପ୍ତରେ ଜାଣିବାକୁ ଦିଅନ୍ତି ନାହିଁ କି ପ୍ରତିକାରର ଉପାୟ ଜଣାନ୍ତି ନାହିଁ । ଏସବୁ କୁଆଡ଼େ ଗହନ କଥା ।

ପାର୍ବତୀ ଏ ସମ୍ବାଦ ପାଇ, ଯାହା କହନ୍ତି, ରକ୍ତଗ୍ରଉଳ ଗ୍ରେବାଇଲା । ନିଗେଳାନେ କୁବେରକୁ ଏସବୁ ବିଷୟ କହି ପଗ୍ଚରିଲା, "ବାବାଜିଙ୍କ ପାଇରେ ପଡ଼ି ଗଞ୍ଜେଇ ଧୂଆଁ ଟାଣି ସ୍ୱର୍ଗ ଦେଖୁଛ ? ଲୋକଙ୍କର ଚକ୍ରାନ୍ତ ତୁମେ ବୁଝି-ପାରୁନା । ସେମାନେ ତୁମକୁ ଚିତା କାଟିବାକୁ ଗ୍ରହାନ୍ତି, ତମର ସବୁ ଉଜାଡ଼ି-ଦେବାକୁ ଗ୍ରହାନ୍ତି । ତୁମକୁ ସେମାନେ ବାଟର ଭିକାରି କରିବାକୁ ମନ ବଳାଇଛନ୍ତି । ସାବଧାନ !"

କୁବେର ଉତ୍ତର ଦେଲା ନାହିଁ । ତେବେ ଗ୍ରାମବାସୀଙ୍କ ପାଖରେ ଟା'ର ପୁରୁଷପଣିଆ ଦି'କଡ଼ା ହେଉ ପଛେ ସେ ପାର୍ବତୀର ବୋଲ ମାନି ଆଉ ପଦାକୁ ଗଲାନାହିଁ । 'ଦେହ ଭଲ ନାହିଁ, ଆଗରେ ଘରେ ଅଟକିଲା । ପାର୍ବତୀ କହିଲା, "ତମ ମୁଣ୍ଡରେ ଦୁଇଟି ବୋଝ ଏବେ ଲଦା ହେଲଣି । ଝିଅ ଦୁଇଟିଙ୍କୁ ପର ଘରକୁ ପଠାଇବାର ବ୍ୟବସ୍ଥା ଏବେ କର, ମଧ୍ୟସ୍ଥି ପଠାଅ ।"

ପାର୍ବତୀ କହିଲା, "ମୁଁ ନିଜେ ମୋ'ର ନନାଙ୍କୁ କହିଥିଲି । ତାଙ୍କୁ ବୟାଅଶୀ ବର୍ଷ ହେଲା । ସେକାଳିଆ ମଣିଷ ତ ନିଗେଳା ଚିଜ ଖାଇଥିଲେ । ସେକାଳ ଲୋକେ ଖାଦ୍ୟପଦାର୍ଥରେ କିଛି କ'ଣ ଭେଜାଲ ଦ୍ରବ୍ୟର ମିଶ୍ରଣକୁ ମହାପାପ ବୋଲି ମଣିଥିଲେ । ଏବକାଳକୁ ଏହା ଓଲଟା । ଧର୍ମ ମିଶ୍ରଣ, କାରଣ, ସବୁଧର୍ମର ଲକ୍ଷ୍ୟ ହେଲା ଈଶ୍ୱରପ୍ରାପ୍ତି ଆଉ, ଈଶ୍ୱର ତ ସୃଷ୍ଟିକର୍ତ୍ତା । ସେଇ ସ୍ଥିତିକର୍ତ୍ତା ଓ ପ୍ରଳୟକର୍ତ୍ତା । ଏବେ ପୁଣି ସ୍ୱର ଉଠିଛି, କୌଣସି ଧର୍ମରେ ତ ଜାତିଆଣ ଭେଦ ବିଗ୍ଚର ନାହିଁ, ତାକୁ ହିନ୍ଦୁଧର୍ମରୁ ଉଠାଅ, ନୋହିଲେ କଥା ସରିଲା । 'ଧର୍ମ ବୁଡ଼ିଗଲା ହେ, ଦେଶ ସରିଗଲା । ତା' ସଙ୍ଗେ ସଙ୍ଗେ ତାଙ୍କର ପୂଜକ, ସ୍ତାବକ ଓ ସେଥିପାଇଁ ଥିବା ଅତି ପୁରାତନ ଓ ସଂପ୍ରତି ଗଢ଼ି ଉଠୁଥିବା ସଂସ୍ଥାଗୁଡ଼ିକ ।

ବୃଦ୍ଧଙ୍କର ମୁଣ୍ଡ ଖରାପ ହେବ ପରା ! କେଉଁ ବ୍ରାହ୍ମଣ ତାଙ୍କର ନାତୁଣୀ ବିଦ୍ୟାଧରୀକୁ ବଧୂ କରି ନେବାକୁ ପ୍ରସ୍ତୁତ ହେବେ ! ଜାତି ଓ କୁଳ ଛାଡ଼ି ସମାଲୋଚନାର ଶରବ୍ୟ ହେବ । ମୁଣ୍ଡ ଟେକି ସମ୍ମାନରେ ଏହି ଦୁନିଆରେ

ଚଳିବ କିପରି ? ନିଜର ଦୋଷ ଆଖିକୁ ନ ଦିଶେ, ପରର କାଣିଗୁଏ ତ୍ରୁଟି ଆଖିରେ ପଡ଼େ; ତିଳ ହୁଏ ତାଳ ।

ସତେ, ବିମ୍ବାଧରୀ ପାଇଁ କେତେ ଜାଗାକୁ ମଧ୍ୟସ୍ଥମାନଙ୍କ ଜରିଆରେ ପ୍ରସ୍ତାବ ପଠାଗଲା । ଯଥେଷ୍ଟ ଧନ ବ୍ୟୟ କରଗଲା । ତା'ର ପ୍ରସ୍ତାବ ସଙ୍ଗରେ ବିଦ୍ୟାଧରୀ ପାଇଁ ପ୍ରସ୍ତାବ ମଧ୍ୟ ଥାଏ । ମଧ୍ୟସ୍ଥମାନେ ଦୁଇଝିଅଙ୍କର ଫଟୋ ବା ଏ ଦେଶୀୟ ଭଷାରେ ଚିତ୍ରପଟମାନ ନେଇ ବୁଲିଲେ । ପ୍ରଚୁର ଧନ ପାଥେୟରୂପେ ନେଲେ । ଗୁଡ଼ିଏ ଆଶା ନେଇ ସେତକ ପାର୍ବତୀକୁ ଦେଇ ବିଦା ହେଲେ ।

ଗୁଇଁଆ କୁବେର ବେହେର ମୁଣ୍ଡ ଟୁଙ୍ଗାରି ମୁହଁ ନେଫଡ଼ି ପାର୍ବତୀକୁ କହିଲା, "ବହୁତ ବଡ଼ ଆଶା କରିଥିଲ । ନିଜେ ବ୍ରାହ୍ମଣ ଘରେ ଜନମ ହୋଇଥିଲ ବୋଲି ଖଣ୍ଡାୟତ ଘରର ଝିଅଟିକୁ ତମେ ବ୍ରାହ୍ମଣ ଘରେ ବୋହୁକରି ଖଟାଇବାକୁ ଓ ଦହଗଞ୍ଜ କରଇବାକୁ ମନ କରିଥିଲ । ପାଇଥାନ୍ତ ଅମର ଲଡ଼ୁ, ନା ? ପାଇଲ ନେଫଡ଼ା ।"

"ଏବେ ଖଣ୍ଡାୟତ ଘରର ବୋହୁଟିଏ କେଉଁଠି ହୋଇପାରିବ । ସେ କଥା ବୁଝ । ମଧ୍ୟସ୍ଥମାନ ପଠାଅ ।"

ପାର୍ବତୀ ମୁଣ୍ଡ ହଲାଇ ସମ୍ମତି ଜଣାଇଲା । ସେତିକି କରିବା ଛଡ଼ା ତା'ର ଅନ୍ୟ ଗତି ନଥିଲା । ସେଇଠୁ ଖବର ପାଇ, କେହି କେହି ଉପରେ ପଡ଼ି ମଧ୍ୟସ୍ଥତା କରିବାକୁ ଆସିଲେ । ବିମ୍ବାଧରୀ ଓ ବିଦ୍ୟାଧରୀ ଦୁଇ ଯୁବତୀ କନ୍ୟାଙ୍କୁ ଦେଖିଲେ। ସେମାନଙ୍କ ଆଗରେ ସେମାନଙ୍କର କୁଆଡ଼େ 'ନାହିଁ-ନ-ଥିବା ରୂପ-ଲାବଣ୍ୟର ପ୍ରଶଂସା କଲେ । ଏପରି ରୂପଲାବଣ୍ୟ, ଯାହା ଲାବଣ୍ୟବତୀର ନ ଥିଲା । ଭଞ୍ଜେ କ'ଣ 'ଲାବଣ୍ୟବତୀ'' ରେ ବର୍ଣ୍ଣିତ ଆମର ବିମ୍ବାଧରୀ ଓ ବିଦ୍ୟାଧରୀଙ୍କୁ ଦେଖିଲେ ଭଞ୍ଜେ ପଳାଇବେ କେଉଣ୍ଡିମାଳ ପର୍ବତମାଳର ଉପତ୍ୟକାର ସେଇ ଗୁହାକୁ, ଏବକାର ଭଞ୍ଜନଗରକୁ, ଯେଉଁଠି ସେ 'ଲାବଣ୍ୟବତୀ' କାବ୍ୟ ଲେଖିଥିଲେ ବୋଲି ଜନଶ୍ରୁତି ପ୍ରଚଳିତ ।

ବିମ୍ବାଧରୀ ଓ ବିଦ୍ୟାଧରୀ ଝିଅ ଦୁଇଟିଙ୍କର ରୂପ, ଗୁଣ ଓ ବିଦ୍ୟା ବୁଦ୍ଧିରେ ସମସ୍ତେ, ଯିଏ ଆସିଲେ, ଦେଖିଲେ ଓ ସେମାନଙ୍କର ବିଦ୍ୟାବୁଦ୍ଧି

ପରଖିଲେ । ସମସ୍ତେ ସନ୍ତୁଷ୍ଟ ହେଲେ । ଦେବାକୁ ପାର୍ବତୀ ଓ କୁବେର ତ କୁଣ୍ଠିତ ହୁଅନ୍ତେ ନାହିଁ । ତେବେ କିଏ କେଉଁଠି କ'ଣ ଯାଇ କାନରେ ଫୋଡ଼ିଲା କେଜାଣି, ପକ୍‌କା ଜବାବ ନ ଦେଲେ କାହିଁକି ? ଖାଲି ଟାଳଟୁଳ ନୀତି ଧରୁଛନ୍ତି ।

× × × ×

ମଣିଷର ଜୀବନ ଜନନୀ—ଜଠରରେ ରହିବା ଦିନରୁ ମରଣ ପରେ ସେ ଭସ୍ମ ହେବା ଅବା ମାଟିତଳେ ସମାଧି ନେବାର ପରଯାଏ କେତେ ଚଳଣି, ପ୍ରଥା, ନିୟମ-କାନୁନ୍‌ରେ ବନ୍ଧା ହୋଇ ରହିଥାଏ । ମରଣ ପରେ କାହାର ଦେହକୁ ପୋଡ଼ି ପାଉଁଶ କରଯାଏ । କେତେକଙ୍କର ଧର୍ମ ବା ପ୍ରଥା ଅନୁରୂପେ ମୃତପଞ୍ଚଭୂତକୁ ଧରଣୀ ମାତାର କୋଳରେ ସମାଧି ଦିଆଯାଏ । କ'ଣ ସେ ସବୁର ଅବସ୍ଥା ହୁଏ, ଯେ କେହି ଅନୁମାନ କରିପାରିବ । ମୃତ୍ୟୁ ଦେବତା ପାଖରେ ତ ପାତର ଅନ୍ତର ଧାରଣା ନାହିଁ । ସମସ୍ତେ ତା'ର କୋଳରେ ସମାନ—'ଧୋରେ ବାଇଆ ଧୋ,—ଯେଉଁ କିଆରିରେ କୋମଳ ମାଣ୍ଡିଆ—ସେଇ କିଆରିରେ ଶୋ' ।

କୁବେର ବେହେରା ଏମିତି ଭାବୁଥିଲା । ପୁଣି ବିଗୁଡୁଥିଲା; ଦୁନିଆରେ ଅପକୀର୍ତ୍ତି ରଟିବ, କୁବେର ବେହେରାର ନାମ ପଡ଼ିଲେ ଲୋକେ ନାକ ଟେକିବେ । ଚିରଦିନ ପାଇଁ କଥା ରହିଯିବ—ସତେ, ସେଇଟା ଗୋଟାଏ ଗଣ୍ଡିଆ ମଣିଷ, ତା' ମୁହଁ ଗୁହିଁଲେ ପାପ । ତା'ର ନାମ ପଡ଼ିଲେ ଥୁଃ-ଥୁଃ । କାଳକାଳକୁ ଏପରି ଅପବାଦ ତ ରହିଯିବ, ପାର୍ବତୀ !

ପାର୍ବତୀ ଗେହ୍ଲେଇ କହିଲା, 'ତମର ବୁଦ୍ଧିମତୀ ମା ତମର ଭଲ ନାମଟିଏ ବାଛିଥିଲେ । ତମର ବୁଦ୍ଧି ଦିନେ ଏପରି ଗଣ୍ଡିଆ ହେବ ବୋଲି ସେ ଜାଣିଥିଲେ ।'

କୁବେର କାନ ମୋଡ଼ି ହେଲା । କହିଲା, ହେଇଟି, ମୁଁ କାନମୋଡ଼ି ହେଉଛି । କହୁଛି, 'କୁବେର ଆଖି ଥାଉଁ ଥାଉଁ ଅନ୍ଧ ହେବ, କାନ ଥାଉଁ ଥାଉଁ ହେବ କାଲ !'

ଦୁଇ ଗାଲରେ ନିଜ ହାତରେ ସେ ନିଜେ ବ୍ରହ୍ମଜାବୁଡ଼ା ମାରିହେଲା । ବାସ୍ ସେତିକି । ସେଇଠୁ ସେ ଅନ୍ଧ ଓ କାଲ ହେବାକୁ ଚେଷ୍ଟା କଲା, ଏବଂ

ମୂକ ମଧ୍ୟ । କିନ୍ତୁ ଆଖି ତ ଦେଖୁଥାଏ, କାନ ଶୁଣୁଥାଏ । ପଦେ କ'ଣ କହିବାକୁ ତୁଣ୍ଡ ଖଲଖଲ ହେଉଥାଏ । ଏକମାତ୍ର ଉପାୟ ହେଉଛି, ମାଳା ଧରି ମନ୍ତ୍ର ଜପ କରିବା । ଗୁପ୍ତରେ ଦିନେ ଚିତାଚଇତନିଆ, ରୁଦ୍ରାକ୍ଷମାଳ ବେକରେ ପିନ୍ଧା ଗୈରିକ-ବସନ-ପରିହିତ ଯୋଗୀଙ୍କୁ ପଚାରିଲା କୁବେର, 'ସେଇ ବଡ଼ ପୁରୁଣା ଏବେ ପୁଣି ଦଳ ମାଡ଼ିଥିବା ପୁରୁଣା ପୋଖରୀ କୂଳର ଓସ୍ତ ଗଛତଳ ଭାଙ୍ଗି-ପଡ଼ିଥିବା ପୁରୁଣା ଛୋଟ ଶିବଲିଙ୍ଗ ପାଖ ଚଟାଣ ଉପରେ ?'

ବାବା କୁବେରର ମୁଣ୍ଡରେ ହାତ ବୁଲାଇଲେ । ମନକୁ ମନ ଭୁଟ୍‌ଭୁଟ୍ ହୋଇ ସଂସ୍କୃତରେ କେଇଟି ପଦ ଉଚ୍ଚାରଣ କଲେ । ସେଇଠୁ କୁବେରର ମୁଣ୍ଡରେ ହାତ ରଖି ଭୁଟ୍‌ଭୁଟ୍ ହେଲେ । ହାତ ଓହ୍ଲାଇ ସେ କହିଲେ, 'ଡୋର ଲାଗିଲା ରେ ପୁଅ, ଏଣିକି ଆଉ ଚିନ୍ତା ନାହିଁ । ତୋ'ଠେଇଁ ଠାକୁରଙ୍କର ଡୋର ଲାଗିଲା ।'

'ମୁଁ କ'ଣ କରିବି, ବାବାଜି ?'

କୁବେର ଏହା ପଚାରନ୍ତେ ବାବାଜି କହିଲେ, 'ତୋ'ର କ'ଣ କରିବାର ଅଛି ! ଡୋର ତ ଲାଗିଛି; ବୋଇଲେ,—ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଓଟାରେ ତେଣିକି ଯାଇ; କ'ଣ କି, ତୋ' ବେକରେ ଭଗବାନଙ୍କର ପଘା ଲାଗିଛି । ତୋ ଆଖିକି ଅଦୃଶ୍ୟ, ମୋ ଆଖିକି ଜଳଜଳ କରି ଦୃଶ୍ୟ ।'

କୁବେର ବେକ ଚାରିକଡ଼ି ହାତ ଅଣ୍ଡାଳିଲା । ଗଞ୍ଜାଇ ଧୂଆଁ ଶୋଷିବାରେ ଅଭ୍ୟସ୍ତ ଓ ନିଶାଖୋର ବାବାଜି କହିଲେ, 'ଆରେ ରେ ନିର୍ବୋଧ, ସେ ଡୋର ତ ସ୍ନେହ ଓ ଆଶୀର୍ବାଦର ଡୋର; ଆଖିକୁ କିପରି ଦିଶିବ ଯେ ହାତରେ ଧରିବୁ ! ସେ ଡୋର ତ ପ୍ରେମର ଡୋର, ଘଟ ଛୁଟିଲେ ତୁ ଭୂତ ହୋଇ ବୁଲିବୁ ନାହିଁ । ମୁକ୍ତି ପାଇ ଏକାଥରେ ସ୍ୱର୍ଗକୁ ଯିବୁ ।'

'କେମନ୍ତ !'

'ହଁ ରେ ପୁଅ ! ସେ କର୍ଣ୍ଣମନ୍ତ୍ର ତତେ ପରେ ଦେବି ଯେବେ ବୁଝିବି ଯେ ତୋ'ର ଭକ୍ତିରେ ମଳିଧୂଳି ନାହିଁ, ଆଉ ତୁ ମନ୍ତ୍ରର ମର୍ଯ୍ୟାଦା ରକ୍ଷାକରି-ପାରିବୁ, ପୁଣି ସେ ଗୂଢ଼ ଘର ବିଦ୍ୟାକୁ ପ୍ରଘଟ କରି ନରକରେ ପଡ଼ି ଛଟପଟ ନ ହବୁ । ଅପାତ୍ରକୁ ମନ୍ତ୍ର ଦାନ କରିବା ଦୋଷରେ ମୋ'ର ମଧ୍ୟ ନରକ ଯୋଗ ହେବ ରେ !'

ବାବାଜି ଉପରେ ଥରିଉଠିଲେ । କୁବେର ଦେଖିଲା, ବାବାଜି ଆଖି ବୁଜି ଅନେକ ସମୟ ଧ୍ୟାନମଗ୍ନ ହୋଇ ବସିରହିଲେ । କେତେବେଳକେ ତାଙ୍କର ନିବିଷ୍ଟତା ଭାଙ୍ଗିଲା କି କ'ଣ ସେ ଆଖି ଖୋଲିଲେ । କୁବେରକୁ କହିଲେ, 'ଏବେ ତୁମେ ଯାଅ କୁବେର, ଶୂନ୍ୟରୁ ବ୍ରହ୍ମାଙ୍କର ବାଣୀ ଶୁଣିଲି ଯେ ତମେ ଦେବଅଂଶୀ ଲୋକ, ତମେ ନିୟମ ପ୍ରକାରେ ସାଧନା କଲେ ତ୍ରିକୂଟରେ ବ୍ରହ୍ମଜ୍ୟୋତିର ରଙ୍ଗମାନ ଦେଖିବ । ଦେହ ଛାଡ଼ିଲେ ତମର ବ୍ରହ୍ମ ବୈକୁଣ୍ଠରେ ପରମ ବ୍ରହ୍ମଙ୍କ ପାଖରେ ଚିରନ୍ତନ ହୋଇ ରହିଛନ୍ତି, ଯେଉଁଠି ଆଗରୁ ମୁନି-ଋଷି ଓ ପରମ-ପୁରୁଷମାନଙ୍କର ଆତ୍ମା ରହିଛନ୍ତି ।'

କୁବେର ମୁହଁରୁ ବାବାଜିଙ୍କର ଏହିପରି କେତେ ଅଲୌକିକ ଶକ୍ତି କଥା ପାର୍ବତୀ ବାରମ୍ବାର ଶୁଣି ଶୁଆପରି ମନେ ରଖିଥିଲା ।

ବାବାଜିଙ୍କ ହାତକୁ ଟଙ୍କା ଦଶଟି ବଢ଼ାଇଦେଇ ସେ ହାତ ଯୋଡ଼ି କହିଲା, 'ଆପଣଙ୍କ ଅଲୌକିକ ଗୁଣସବୁ ଗ୍ରାମବାସୀ ସମସ୍ତେ ଜାଣିଲେଣି । ଲୋକଙ୍କୁ ଗଞ୍ଜେଇ ଟଣାଇ ସ୍ୱର୍ଗବାସୀ କେବେ କରାଇବାକୁ ସେମାନେ ପସନ୍ଦ କରୁନାହାନ୍ତି । ମୋ' ସ୍ୱାମୀ କୁବେରଙ୍କର ଏବହୁଁ ସ୍ୱର୍ଗ ଦେଖିବା ଓ ସେପୁରକୁ ଗଲେ କେଉଁଠି ରହିବେ ସେ ସ୍ଥାନ ଦେଖିବା ଲୋଡ଼ା ନାହିଁ । ମୋ'ର ଭଲ କୁହା ମାନି ଆଜି ରାତିଏ ରାତିଏ ଆଉ କେଉଁ ଗ୍ରାମର ମଶାଣିପାଖ ପୋଖରୀ-କୂଳର କେଉଁ ଗଛମୂଳକୁ ଆସ୍ଥାନ ଉଠାଇନିଅନ୍ତୁ ।

'ଉପରୁ ନିର୍ଦ୍ଦେଶ ଆସିଲା, ସ୍ୱୟଂ ଡମ୍ବରୁଧାରୀ ଶିବ ରାତି ଅଧରେ ଷଣ୍ଢ ବାହନରେ ଆସି, ସେ ଗ୍ରାମର ଲୋକଙ୍କୁ ତ୍ରାଣ କରାଇ ଶିବଲୋକରେ ସୁଖରେ ରହିବାକୁ ଦୟାକରି ଏପରି ବ୍ୟବସ୍ଥା କରିଛନ୍ତି ବୋଲି ଆଖି ବୁଜି ଆପଣ ଯୋଗାସନରେ ବସି ପ୍ରଚାର କରନ୍ତୁ । ଏତକ ନ କଲେ ଉତ୍ତମ-ମଧ୍ୟମ ସହ ଖଣ୍ଡିଆ ଖାବର କରି, ମୁଣ୍ଡ ଲଣ୍ଡା କରି, ନିଶ କାଟି, ଦାଢ଼ି ଛାଡ଼ି ଏ ଗ୍ରାମରୁ ଆପଣଙ୍କୁ ମୁଁ ବିଦାୟ କରିଦେବି ।..

'ବୁଝିଲ ବାବା, ମୁଁ ପାର୍ବତୀ କହୁଛି, ତମର ପରମ ଗଞ୍ଜେଇ-ଧୂଆଁ-ଟଣା ଭକତ କୁବେର ବେହେରାଙ୍କର ଘରଣୀ । ସେ ତାଙ୍କର ସାଂସାରିକ ଦାୟିତ୍ୱ ମେଣ୍ଟଣ କରାଇ, ତାଙ୍କର ଘରଣୀ ଅର୍ଥାତ୍ ମୁଁ ଅହିଅରଣୀ ହେଲା ପରେ ମୋ ମୁହଁରେ ଜୁଇ ଦେଇ ସେଇଠୁ ଶିବଲୋକକୁ କି ବୈକୁଣ୍ଠକୁ ଅବା ତମ ସଙ୍ଗରେ ନରକ କୁଣ୍ଡକୁ ଯିବେ ତ ଯାଉନ୍ତୁ ।'

ପାର୍ବତୀ ମୁଣ୍ଡିଆ ମାରି ଘରକୁ ଫେରିଲା । ଭୟରେ କୁବେର ବେହେରା ଏ ସମ୍ବାଦ ପାଇ ଅପସରି ରହିଲା; ବାବାଜିଙ୍କ ପାଖ ମାଡ଼ିଲା ନାହିଁ ।

× × × ×

ପରଦିନ ଅବଧୂତ ବାବା ତାଙ୍କର ଡେରା ଉଠାଇ ତିନୋଟି ଗ୍ରାମ ଛାଡ଼ି ଚତୁର୍ଥ ଗ୍ରାମ ଚମ୍ପାପୁର ପଦ୍ମ ପୋଖରୀ ପାଖ ଚୋଟ୍ରା ପାଖରେ ଆସ୍ଥାନ ଥାପିଲେ । ଗ୍ରାମର ବସ୍ତି ତ ଅଳ୍ପ ଦୂରରେ । ହୁଡ଼ା ତଳେ ତଳେ ବିସ୍ତୀର୍ଣ୍ଣ ଗହୀର ମାଳକୁ ଚଲାବାଟ । ସଞ୍ଜରେ ଓ ସକାଳେ ଯାତାୟାତ ମଣିଷ କାର୍ଯ୍ୟବ୍ୟସ୍ତ ।

ସେହି କାର୍ଯ୍ୟବ୍ୟସ୍ତ ଓ କର୍ମକ୍ଳାନ୍ତ ହତଭାଗ୍ୟମାନଙ୍କୁ ଟିକିଏ ଶାନ୍ତ କରିବା, ଭଗବାନଙ୍କ ନାମ ନେବା ବାବାଜିଙ୍କର କାମ । ସେ ଚେଷ୍ଟା କଲେ ।

ଏ ସମ୍ବାଦ ଆଖପାଖ ଗ୍ରାମମାନଙ୍କରେ ବ୍ୟାପିଲା । ପାର୍ବତୀ ଜାଣିଲା । ମନ ଡାକୁଥିଲା, ଥରେ ଯାଇ ଦେଖିଆସିବ; ଶୁଣିବା କଥା ପରଖି ଆସିବ । କିନ୍ତୁ ସେ ଗଲାନାହିଁ । ମନକୁ ବୁଝାଇ କହିଲା,–ମୋ'ର କି ଯାଏ ! ନିଜ ରକ୍ଷଣ ନିଜକୁ ଅସମ୍ଭବ ବୋଲି ବାବାଜିଟା ଅନ୍ୟକୁ ଠକି, ଧୂଆଁ ଶୋଷି, ଅନ୍ୟକୁ ପ୍ରବର୍ତ୍ତାଇ ଗଞ୍ଜୋଡ଼ କରିବାକୁ ବସିଥିଲା । ହୁଅ ଧୂଆଁଶୋଷା, କଷ୍ଟରେ ଉପାର୍ଜିତ ଧନରେ ନିଆଁ ଲଗାଇ ପୋଡ଼, ନିଜର ଭିତରଟା ବି ବିଷଧୂଆଁରେ ଜାଳିଦେଇ ଜୀବନକୁ ହାଉଲେ ହାଉଲେ ପୋଡ଼ି ଚାଲ ।

ପାର୍ବତୀ ସେ ପଳାତକ ଶିବଭକ୍ତ ବାବା ଉପରେ ରକ୍ତସ୍ୱଭଳ ଚୋବାଇ ମନକୁ ମନ ତାକୁ ଗାଳିଦେଲା । ଯୋଗନୀ-ଝିଆ ରେ, ଯାଇଛୁ ତ ଯାଆ । ଆଉ ଏ ଗାଁରେ ପାଦ ଦେ'ନା । ହଁ, ଯାହାପଛେ ମୋର ହେଲେ ହେଉ, ମୋ'ର ଜୀବନଛ ବଳି ସେରନ୍ତା, ମୋ' ଦୁଇ ଝିଅ ବିମ୍ବାଧରୀ ଓ ବିଦ୍ୟାଧରୀଙ୍କ ପିଅନ କୁବେର ବେହେରକୁ ଯଦି କେବେ ଧୂଆଁ ଶୋଷେଇବୁ ମୁଁ ତୋ' ଜୀବନ ଶୋଷିବି, ଏହା ମୋ'ର ତ୍ରିବାର ସତ୍ୟ, ହଁ ହଁ, ତ୍ରିବାର ସତ୍ୟ ।

ଏହିପରି ମନେମନେ ପ୍ରତିଜ୍ଞା କରି ପାର୍ବତୀ କୁବେରକୁ ଖୋଜି ଖୋଜିକା ପୋଖରୀର ଆଡ଼ି ଉପରେ ଓସ୍ତଗଛତଳ ଛୋଟ ଶିବ ମନ୍ଦିର ପାଖରେ ହେଲା । ସେହି ଛୋଟ ମନ୍ଦିର ଆଗବାଟେ ଚଲାବାଟଟି ପାଣି ପାଖକୁ

ପଡ଼ିଛି । ବାଟର ଦୁଇ ପାଖରେ ଦଳର ଅରମା । କୋଇଲିଖିଆ କଣ୍ଟାଗଛ । ଗୁହିଁଲା ବେଳକୁ ଦେଖିଲା କେଜାଣି କାହିଁକି କୁବେର ପାଣିକୂଳକୁ ଯାଇଥିଲା, ଏବେ ଚେଣ୍ଡୁ ଫେରୁଛି ।

ସେ ଅପେକ୍ଷା ନ କରି ଚା'ରି ଆଡ଼କୁ ଧାଅସି ଗୁଲିଲା । ଯୋଗ କହାଉଛି, ତାକୁ ମରଣ ଡାକୁଛି, ସେଥିକି କାହାର ହାତ ! ହଠାତ୍ ବାମ କଡ଼ର ଅରମା ଭିତରୁ ଫଁ-ଫଁ ହୋଇ ଗୋଟାଏ ତମ୍ପ ବାହାରି ପାର୍ବତୀର ଗୋଡ଼ ସିଧା ଆସିଲା । ଭୟରେ ଛାନିଆ ହୋଇ ଏକଡ଼ ସେକଡ଼ ହେଉଣୁ ତମ୍ପ ଉପରେ ଗୋଡ଼ ନ ପଡ଼ି ତା' କଡ଼ରେ ପଡ଼ିଲା; ସେ ଗୋଟ ହାଣିଲା ।

କୁବେର ଧାଇଁଆସିଲା ବେଳକୁ ପାର୍ବତୀ ଗୋଡ଼ ଧରି ଗଡ଼ି ଛାଡ଼ିଛି ଓ ନଥକରି ବସିପଡ଼ିଛି । ଯେତେ ସଫା କଲେ କାହୁଁ କାହୁଁ ପୁଣି ଦଳ ବଢ଼ୁଛି । ଯେତେ ମାରିଲେ ବି କୁଆଡ଼ୁ ବେଙ୍ଗ ଖାଇବାକୁ ସାପ ଆସୁଛନ୍ତି । କିଏ କ'ଣ କହିଲା, ଅବା ଅଭକ୍ତି ଦେଖାଇଲା କି କ'ଣ, ଶିବବାବା ଏ ଗ୍ରାମ ଛାଡ଼ି ଗଲେ । ଏବେ ଶିବବାବାଙ୍କର ଚେଲାମାନେ ଖବର ପାଇ ଧାଇଁ ଆସିଲେ । ନିଜ ନିଜ ମଧ୍ୟରେ କୁହାକୁହି ହେଲେ, ପାର୍ବତୀ ଅଭକ୍ତିର ଫଳ ପାଇଲା । କୁବେର ଶିବବାବାଙ୍କର ସେବା କରୁଥିଲା ବୋଲି ତାକୁ ପରିହାସ କଲା । ବାବାଙ୍କର ଅକୀର୍ତ୍ତି ମନରୁ ଫାନ୍ଦି ଗାଇଲା । ପ୍ରଗ୍ଭର କଲା, ମହାଶିବଙ୍କର ଅବତାର ଶିବବାବାଙ୍କର ସେବାରୁ ତାକୁ ନିରସ୍ତ କଲା, ଅଥଚ ସେ ହତଭଗିନୀ ନିଜେ ପାର୍ବତୀର ନାମ ବହିଛି, ଭୁଲିଗଲା ଯେ ଶିବଙ୍କୁ ଲଭ କରିବାକୁ ଏକଦା ଦେବୀ ପାର୍ବତୀ ଯୁଗଯୁଗ ଧରି ତପସ୍ୟା କରିଥିଲେ । ଯାହା ହେବାର ତ ହୋଇଛି । ଏବେ ପାର୍ବତୀର ମୃତ ଦେହକୁ ଧରି ଶିବବାବାଙ୍କ ପାଖକୁ ଗ୍ଭଲ । ସେ ଦୟା କଲେ, ଯମରାଜକୁ ଅନୁରୋଧ କଲେ, କେଜାଣି ପୁଣି ଯଦି ପାର୍ବତୀ ଜୀବନ ଲଭ କରେ ତ ଉତ୍ତମ । ନୋହିଲେ ଭକତମାନେ ବଳେ ଶିକ୍ଷା ପାଇବେ, ଶିବଭକ୍ତଙ୍କୁ ଉପହାସ କଲେ, ଅପମାନ ଦେଲେ, କେଡ଼େ ଭୟଙ୍କର ପରିଣାମ ଘଟେ ।'

ତାଙ୍କମାନଙ୍କର ଉପଦେଶକ୍ରମେ ସେ କାର୍ଯ୍ୟ କୁବେର କରଇଲା । ପାର୍ବତୀର ଅତି ବୃଦ୍ଧ ପିତା ବିମଳାନନ୍ଦ ଠେଙ୍ଗା ଧରି ନାତିଟୋକାର ହାତ ଧରି ସଙ୍ଗରେ ଅନ୍ୟ ଲୋକ ନେଇ ଗ୍ଭଲିଗ୍ଭଲି ଶିବବାବାଙ୍କ ଛାମୁକୁ ଗଲେ । ମୁଖରୁ

ଶିବ ସ୍ତୋତ୍ର ଅନର୍ଗଳ ବାହାରୁଥାଏ । କିଛି ଧନ ମଧ୍ୟ ସଙ୍ଗରେ ସେ ନେଇ-ଯାଇଥିଲେ ।

ସବୁ ଚେଷ୍ଟା ବିଫଳ ହେଲା । ନିଜେ ଶିବବାବା ତାଙ୍କୁ ମନ୍ତ୍ରପାଠ କରି ବାରଂବାର ଝାଡ଼ି ବଂ-ବଂ ଭୋଲାନାଥ ଶିବଙ୍କର ନାମ ବାରଂବାର ଉଚ୍ଚାରି ତାଙ୍କୁ ଗୁହାରି କଲେ, ରକ୍ଷାକର ଭୋଳାନାଥ । ସବୁ ଚେଷ୍ଟା ବିଫଳ ହେଲା । ଭୋଳାନାଥଙ୍କ ମନ ତରିଲା ନାହିଁ । ପାର୍ବତୀର ନିଦ୍ରା ଆଉ ଭାଙ୍ଗିଲା ନାହିଁ; ନିଦ୍ରା ନୁହେ ତ, ମହାନିଦ୍ରା । ଶିବବାବା ଶୂନ୍ୟକୁ ନିବିଷ୍ଟନେତ୍ରରେ ଅଳ୍ପ ସମୟ ଚାହିଁରହିଲେ । ତାଙ୍କ ଦେଖାଦେଖି ଚେଲାମାନେ । ମୃଦୁ ହସି ଭେଷ୍ଟଦ୍ୟମାନ ଅତି ବୃଦ୍ଧ ବିମଳାନନ୍ଦଙ୍କୁ ଚାହିଁଲେ । 'ବଂ-ବଂ ଭୋଲା' ବୋଲି ରଡ଼ି ଛାଡ଼ିଲେ । ଚେଲାମାନେ କିଛି ବୁଝନ୍ତୁ ବା ନ ବୁଝନ୍ତୁ, ଅବିକଳ ସେହି ରୀତିରେ ଶିବଙ୍କୁ ଡାକିଲେ । ବାବାଜି ହାତ ଟେକି ବାରଣ କଲାରୁ ସମସ୍ତେ ନୀରବିଲେ ।

ବାବାଜି ବିମଳାନନ୍ଦଙ୍କୁ କହିଲେ, 'ଦେଖିଲ ଟି, କିପରି ସ୍ୱର୍ଣ୍ଣମୟ ରଥରେ ବର୍ଦ୍ଧି ମୂର୍ତ୍ତି ମାତା ପାର୍ବତୀ ଶିବପୁରକୁ ଯାତ୍ରା କଲେ ! କେତେଦିନ ଆଉ କୈଳାସପୁର ଛାଡ଼ି ଏଠାରେ ରହିବେ ! ଦି ପୁଅଙ୍କ ଭିତରେ ନିତି ଝଗଡ଼ା । ପେଟୁ ଗଣେଶ ତା' ଶୁଣ୍ଡରେ ନେଇ ହାଉଁ-ହାଉଁଆ ପାଟିରେ ସବୁ ଠୁଙ୍କି ପେଟରେ ପୂରଉଛି । ସୁକୁମାରିଆ କାର୍ତ୍ତିକ ରୁଷିରୁଷି ନାକ ଟେକି ନେଉଣୁ ସବୁ ଶେଷ । ପାର୍ବତୀଙ୍କ ବିନା କୈଳାସପୁରରୁ ଅଶାନ୍ତି ଦୂର ନ ହୁଏ । ଗଣେଶଙ୍କର ଉପାତିଆ ମୂଷାଟା କ'ଣ କମ୍ ଉପାତ କରୁଛି !...

'ତମେ ଦୁଃଖ କରନା, ବିମଳ ଶର୍ମା, ତମେ ଭାଗ୍ୟବାନ୍ ଯେ ମାତା ତମର କନ୍ୟା ହୋଇ ଜନମିଥିଲେ, କାହିଁକି ଜାଣ ? କଳିଯୁଗରେ, ଏ ଭବ ସଂସାରରେ, ଭାରତଭୂମିରେ, ହିନ୍ଦୁ ସମାଜରେ, ବିଶେଷତଃ ବ୍ରାହ୍ମଣ କୁଳରେ, ବାଲ୍ୟ-ବିବାହ କରି ଥରେ ବିଧବା ହେଲେ, କେତେ ଦୁଃଖ, ନିର୍ଯ୍ୟାତନା, ପୁଣି ପୁନର୍ବିବାହ କଲେ, ଅନ୍ୟ ଜାତିରେ; କଥା ସରିଗଲା । ଗୀତ ଗୋବିନ୍ଦ ଅଶୁଦ୍ଧ ହୋଇଯାଏ ।...

'ଯାଅ ହେ ବିମଳାନନ୍ଦ ଶର୍ମା, ତମର କନ୍ୟା କୈଳାସପୁରରେ ପହଞ୍ଚି ସାରିଲାଣି । ସେ ଏବେ ମା ପାର୍ବତୀ ହୋଇ ନିଜ ରୂପ ଧରିଲେଣି; ସମସ୍ତଙ୍କର ନମସ୍ୟା ଓ ପୂଜନୀୟା ।'

ଶିବବାବା କରଯୋଡ଼ି କପାଳରେ ଲଗାଇଲେ । ତାଙ୍କ ଦେଖା-ଦେଖି ସମବେତ ଭକତମାନେ । ଚିଲମ ଏ ହାତରୁ ସେ ହାତ ହେଉଁଲା । ହତାଶ ହୋଇ ବୃଦ୍ଧ ବିମଳାନନ୍ଦ ତାଙ୍କ ନାତିର ହାତ ଧରି ଶିବବାବାଙ୍କର ମଶାଣି ଆଶ୍ରମରୁ ବାହାରି ଆସିଲେ । ତାଙ୍କ ପଛେ ପଛେ ପାର୍ବତୀର ମୃତ ଦେହ ନେଇ ଶବବାହକମାନେ ତାକୁ ଦାହ କରିବାକୁ ନିଜ ମଶାଣିକୁ ଫେରିଆସିଲେ ।

ସେମାନଙ୍କର ପଛେ ପଛେ ଫେରିଆସିଲେ ବିମଳାନନ୍ଦଙ୍କ ପାଳିତ ପୁତ୍ରଟି । ଅତି ଅନୁଗତ, ମାତୃଭକ୍ତ, ବଳିଷ୍ଠ ତରୁଣ । 'ତୋ ନାନୀ କଥା ତୋ' ବୋଉ ପଚାରିଲେ ତୁ କ'ଣ କହିବୁ, 'ଦୀନବନ୍ଧୁ ?'

'କହିବି, ନିଜର ଆଖିରେ ମୁଁ ଯାହା ଦେଖିଛି, ବାବା ଯାହା କହିଲେ, ସେଇଆ । ସ୍ୱର୍ଗରୁ ଇନ୍ଦ୍ର ଯାନ ପଠାଇଥିଲେ; ସେଥିରେ ବସି ସେ ସ୍ୱର୍ଗକୁ ଗଲା ।'

ବୃଦ୍ଧ ବିମଳାନନ୍ଦ ଶର୍ମା ବୁଝିଲେ, ତାଙ୍କର ଏହି ପାଳିତ ଏକମାତ୍ର ପୁତ୍ର ଦୀନବନ୍ଧୁ ମଧ୍ୟ ଶିବବାବାଙ୍କର ପ୍ରସାଦ ପାଇଛି, ଦି'ଦମ୍ ଧୂଆଁ ଅନ୍ୟମାନଙ୍କ ପରି ଶୋଷିଛି । କଥା ସରିଗଲା ହେ ଭଗବାନ୍, ଏ ଦୁନିଆ ଖାଲି ଜୀବନ୍ତ ଇଞ୍ଜିନ୍‌ରେ ପରିଣତ ହେବ; ସମସ୍ତେ ଧୂଆଁ ଶୋଷିବେ ଓ ଛାଡ଼ିବେ ।

ବୃଦ୍ଧ ବିମଳାନନ୍ଦଙ୍କର ପତ୍ନୀ ସାବିତ୍ରୀ ଦେବୀ ଅତି ଉଦ୍‌ବିଗ୍ନ ହୋଇ ତାଙ୍କର ସ୍ୱାମୀ ଓ ପୁତ୍ରଙ୍କୁ ଚାହିଁ ରହିଥିଲେ । ପିତା ଓ ପୁତ୍ରଙ୍କୁ ଦେଖି ସେ ଆହ୍ଲାଦିତ ହେଲେ । କୌଣସି ସମାଚାର ସେ ପଚାରିଲେ ନାହିଁ । ସେ ତ ଜାଣିସାରିଥିଲେ ଯେ ତାଙ୍କର ଅତି ଦୁଃଖିନୀ କନ୍ୟାଟି ସେପୁରକୁ ଯାଇ-ସାରିଛି । ତା'ର ପାର୍ଥିବ ଦେହଟାକୁ ପୋଡନ୍ତୁ, ପୋଡ଼ନ୍ତୁ, ଖଣ୍ଡଖଣ୍ଡ କରି କାଟି ଛିଣ୍ଡାଇ ବିଲୁଆ-କୁକୁରଙ୍କୁ ଦେଉନ୍ତୁ, ସେଥିରେ ଯାଏ ଆସେ କ'ଣ ? ସେ ତ ଜାଣିବ ନାହିଁ । ଅନୁଭବ ଶକ୍ତି ବିହୀନ ପିଣ୍ଡଟି କାଠ ପଥର ସଙ୍ଗେ ସମାନ । ସେ ଦେହଟା କେମିତି ଭସ୍ମ କରଗଲା, ସେ ବିଷୟ ଭାବିବା ନିଷ୍ପ୍ରୟୋଜନ । ସାବିତ୍ରୀ କହିଲେ, 'ପାର୍ବତୀ ଦୁଇଟି ଛୋପରୀ ଝିଅ, ବଢ଼ିଲା ଝିଅ, ପୁଣି ଟିକିଏ ଟିକିଏ ଗର୍ବୀ ଓ ମୁହଁଖୋରଣୀ ଝିଅର ବୋଝ କୁବେର

ବେଢେଗ ଉପରେ ଲଦିଦେଇଯାଇଛି । କେମିତି ସେମାନେ ଅଛନ୍ତି, କେମିତି ଚଳିବେ, କେଉଁଠିକୁ ପର ଘରକୁ ସଂସାର କରିବାକୁ ଯିବେ ଅବା ଧନ ପାଇଁ ଦି' ଭଉଣୀ ବିମ୍ବାଧରୀ ଓ ବିଦ୍ୟାଧରୀ ପିଟାପିଟି ହୋଇ କୋର୍ଟ-କଚେରିକୁ ଯିବେ, ତାଙ୍କ ଧନ ଅନର୍ଥକ ଦାଣ୍ଡର ଭଗାରି ଖାଇବେ, ସେ କଥା ସ୍ଥିର କର ।'

× × × ×

ବହୁଦିନ ଚିନ୍ତା କରି ଆଖିର ଲୁହରେ ଗାଲ ଧୋଇ ବିମ୍ବାଧରୀ ସ୍ଥିର-ସଂକଳ୍ପ ହେଲା, ଜାତିଆଣର ବନ୍ଧନକୁ ସେ ମାନିବ ନାହିଁ । ଜନ୍ମ ହେଲାବେଳେ କିଏ କେଉଁ ଧର୍ମର, ଜାତିର, କୁଳର ବା ବଂଶର, ମଣିଷ ପିଲାର ଦେହରେ କେଉଁଠି ଲେଖା ହୋଇ ନ ଥାଏ । ସେ ଯେଉଁ ଘରେ, କୁଟୁମ୍ବରେ, ସମାଜରେ, ଆଚରଣ କରୁଥିବା ପ୍ରଥା ତଥା ଚଳଣର ପ୍ରକୃତି ସେଥିରେ ସେ ଧୀରେ ଧୀରେ ଅଭ୍ୟସ୍ତ ହୁଏ । ସେଇ ହୁଏ ତା'ର ଚଳନର ରିତିନୀତି ।

× × × ×

ବିଦ୍ୟାଧରୀର ବୟସ ମଧ୍ୟ ଯଥେଷ୍ଟ ହୋଇଛି । ଯେତେ ଧନ ବ୍ୟୟ ହେଉ, ଯେଉଁ ଜାତିରେ ହେଉ, ବାହା କରାଇବ । ବୁଢ଼ା ବାପ କୁବେର, କାନକୁ ଭଲ ଶୁଭୁ ନାହିଁ, ଆଖିକୁ ଭଲ ଦିଶୁନାହିଁ, ତଥାପି ହାତରୁ ଚାବି ଛାଡ଼ୁ ନାହିଁ । ହାତ ଟେକି କାହାକୁ କିଛି ଦେଉନାହିଁ । ପଚାରିଲାରୁ କହିଲା, ' ଅତି କଷ୍ଟରେ ଅର୍ଜନ କରିଛି । ନିଜେ ଖର୍ଚ୍ଚରେ ସାବଧାନ ହୋଇ ସଞ୍ଚୟ କରିଛି କ'ଣ ଫାଉମରଙ୍କ କଥାରେ ପଡ଼ି ଫୁଟ୍‌କି ଫୁଟାଇ ଉଡ଼ାଇଦେବାକୁ ?

ବିଦ୍ୟାଧରୀର ବାହାଘରକୁ ଯାହା ଖର୍ଚ୍ଚ ହେବ ଦେବାକୁ ସେ ପ୍ରସ୍ତୁତ; ଆଗ ସେ ଜୋଇଁଟାକୁ ଦେଖିବାକୁ ଚାହାନ୍ତି । ଜୋଇଁ ଯେ ହେବେ ରାଜି ହେଲେ, କୁବେର ମହାଜନଙ୍କ ଘରେ ଗହଣାଗାଣ୍ଠି ଓ ବାସନ କୁସନ ବନ୍ଧା ରଖିଥିବା ଖାତକମାନଙ୍କଠାରୁ ମାଗଣ ଅସୁଲ କରି ସେତକ ବିଦ୍ୟାଧରୀ ଅସୁଲ କରିବ । ତାର ବାପ କୁବେର ତାକୁ ସୂତ୍ର ବତାଇ ଦେଇଛି । କହିଛି, ଆଲୋ ମା, ମୁହଁ-ମୁଲା ଇଜ୍ଜା ବେପାର ପାଇଁଟିକୁ କାମ ଦିଏ ନାହିଁ । ଦିନେ ମୂଳ ତ ବୁଡ଼ାଏ, ସୁଧ କଥା ପଛ । ଦାନ୍ତ ନିକୁଟି, ହାତ ଯୋଡ଼ି, ନିର୍ଲଜ ପଣରେ ଜିଣିବ । ଝିଅଟାର ବାହା ଦେଉଛି ଏ ଦିନେ, ସେଇଥିପାଇଁ ତ ମାଗୁଣି; ପୁଞ୍ଜି ପୁଞ୍ଜିକ ସେଣେ ବିନବ୍ୟୟ କଲେ, ଅଭବ ବେଳେ କେହି ଗୁରିଆଡ଼ୁ ହତାଶ ହୋଇ ମୋ' ଉପରେ ଭରସା ରଖି ଧାଇଁ ଆସିଲେ କିପରି ତାକୁ ହନାଶ

କରି, ନାହିଁ ବାଣୀ ମୁଁ ଶୁଣାଇଁ, ସେହି ଦୁଃଖରେ ଛଟପଟ ହୋଇ ଉନ୍ନିଦ୍ର ରଜନୀ ବିତାଇବି !

ଏମିତିଆ ବାଣୀ ! ହାରେ ତ କୁବେରର ଧନର ବାଣୀ, ଅଭବାକୁ ନେଉଛି ଟାଣି, ତା'ରି ଝିଅଟି ବିଦ୍ୟାଧରୀ, ଶିବପୁରକୁ କୈଳାସ ଭବନକୁ ଶୂନ୍ୟଯାନରେ ଯେଉଁ ପାର୍ବତୀ ଦେବୀ ଯାଇଥିବାର ଶିବଜଟା· ସେବନକାରୀ ଶିବଭକ୍ତମାନେ ଦିବ୍ୟ ଚକ୍ଷୁରେ ଦେଖିଥିବାର ଅନେକ ଲୋକଙ୍କଠାରୁ ଶୁଣାଯାଏ , ତାଙ୍କରି ତନୁଜା ଶ୍ରୀମତୀ ବିଦ୍ୟାଧରୀ ଦେବୀଙ୍କର ଶୁଭ ପରିଣୟ ଉପଲକ୍ଷରେ ମାଗୁଣି ଦେଇ ଧନ୍ୟ ନ ହେବ କେଉଁ ଖାତକ ?

ହେଲେ ଦଶ ପଚିଶ ଜଣଙ୍କର ଲାଠି ଜଣକର ବୋଝ ହେଲାପରି, ଏହି ମାଗୁଣି·ଧନ ବିଦ୍ୟାଧରୀର ହିସାବରେ ଜମା ହେଲା । ସେଥିପାଇଁ ସ୍ୱତନ୍ତ୍ର ସିନ୍ଦୁକ ବାକସ ଓ ଖାତା ରଖାଗଲା । ମାର୍‌ଫତ୍ କୁବେର ବେହେରା । ଯେକୌଣସି ମୁହୂର୍ତ୍ତରେ ତାଙ୍କର ଝିଅ ଓ ଜୋଇଁ ଶ୍ରୀଯୁକ୍ତ ଦୁର୍ଲଭ ପରିଡା ଅନ୍ୟତ୍ର ସ୍ୱତନ୍ତ୍ର ନିବାସ କରିପାରନ୍ତି ଓ ସେଠାକୁ ପ୍ରସ୍ଥାନ କରିପାରନ୍ତି ।

ବିଭଘରକୁ ବିଦ୍ୟାଧରୀର ମାତା ପାର୍ବତୀଙ୍କର ବାଲ୍ୟ-ବିବାହ କାଳର ପ୍ରଥମ ଶ୍ୱଶୁର ଘରର ମାମୁଁ ବିଜୟ ଓ ଅଜୟଙ୍କ ପାଖକୁ ତଥା ବିନୋଦ ବିହାରୀ ଠାକୁରଙ୍କୁ ଦାନ କରାହୋଇଥିବା ସମ୍ପତ୍ତିର ଟ୍ରଷ୍ଟବୋର୍ଡର ସଭାପତିଙ୍କୁ ମଧ୍ୟ ନିମନ୍ତ୍ରଣ କରାଯାଇଥିଲା । ପାର୍ବତୀ ଦେବୀଙ୍କର ଶିବପୁରକୁ ଯାତ୍ରା ସେ ଗ୍ରାମରେ ଏପରି ଭାବରେ ପ୍ରଚାରିତ ହୋଇଥିଲା ଯେ ଲୋକେ କପାଳରେ ଯୋଡ଼ହସ୍ତ ଲଗାଇ କହିଥିଲେ, ଧନ୍ୟ ଗୌ-ତ-ମ ମହାସତୀ ପାର୍ବତୀ, ଭବ ରଙ୍ଗମଞ୍ଚରେ ଅଳ୍ପଦିନର ଲୀଳାଖେଳା କରି ଶିବଲୋକକୁ ଜାଣି ସ୍ୱଦେହରେ ଚାଲିଗଲେ । ମର୍ତ୍ତ୍ୟପୁରରେ ଯେଉଁ ଲୀଳା ଲଗାଇଥିଲ, ତା'ର ଦୁଇଟି ସଂକେତରୁ ଗୋଟିଏ ସେ ବିଦ୍ୟାଧରୀ । ତା'ର ଶୁଭ ପରିଣୟ ଉପଲକ୍ଷରେ ଯୋଗ ଦେବାକୁ ବିନୋଦ ବିହାରୀଙ୍କର ଚଳନ୍ତି ପ୍ରତିମା ଅବଶ୍ୟ ବିଜେ କରିବେ ।'

ଅଜୟ ଓ ବିଜୟ କରୁଣାସାଗରଙ୍କର ଦୁଇ ଭଣଜା ତହିଁରେ ପ୍ରବଳ ପ୍ରତିରୋଧ କଲେ । ପିତାମହ ଦୟାସାଗର ତାଙ୍କର ପୁତ୍ର କରୁଣାସାଗରଙ୍କୁ ଅନୁଗମନ କରି କେବେଠାରୁ ସ୍ୱର୍ଗବାସୀ ହୋଇଥିଲେ । ଅଜୟ ବିଜୟ ଦୁଇ

ନାତି, କନ୍ୟା ସୁମିତ୍ରାର ନନ୍ଦନ । ଯାହା ହେଉ, ନିମନ୍ତ୍ରଣ ପାଇ ବିମ୍ବାଧରୀର ବିଭାଘରରେ ଯୋଗ ଦେଇଥିଲେ । ଆଶ୍ଚର୍ଯ୍ୟ ଘଟଣା ।

ବାଜପତି ପୁରୋହିତଙ୍କୁ ନାପିତ ବାପୁଡ଼ା ଫଗୁବେଙ୍କ୍ ହାତଯୋଡ଼ି ନିଭୃତରେ ପଗ୍ଭରିଲା 'ଗୋସାଇଁ ମହାପ୍ରଭୁ, କିସ ନ ଦେଖିଲା ନୟନ, ଏ ବୁଢ଼ା ବୟସରେ, ଆଇଷ ଶେଷ ହେଲା ବେଳେ ?'

ବାଜପତି ହସିଲେ । କହିଲେ, 'ତତେ ଗ୍ଭରିକୋଡ଼ି ଧରିବ କହୁଥିଲୁ । ବଳି ଅବଧାନ ଜ୍ୟୋତିଷ କହୁଥିଲେ, ତୁ ପାଞ୍ଚ କୋଡ଼ିକୁ ମୁଣ୍ଡେଇ ଖସିବୁ । ମତେ ବି ସେମିତିଆ; ମୁଁ କିନ୍ତୁ ଆଗରୁ ଖସିବି କହୁଥିଲେ । ପାଠ ଯାହା କହିଲା, ସେ କ'ଣ କରିବେ !

'ଯାହାହେଉ, ବିମ୍ବାଧରୀ, ସେ ଯାହାର ଝିଅ ହେଉ, ଯାହାକୁ ବାହା ହେଇଥାଉ, ଭଲରେ ରହୁ, ସୁଖରେ ରହୁ । ଗ୍ଭରିପୁଅ, ଗ୍ଭରିଝିଅ ତା'ର ହେଉନ୍ତୁ । ଅଚଳାଚଳ ସମ୍ପତ୍ତିରେ ଘର ପୂର୍ଣ୍ଣ ହେଉ ।...

'ଆଉ, ଦୁଃଖୀ ଅଭବୀଙ୍କର ସେ ଦୁଃଖ ବୁଝୁ । କୁବେର ବେହେରା ପରି ଗଢ଼ ରକ୍ତଶୋଷା ଜୀବ ସେ ନ ହେଉ ।'

ଫଗୁବେଙ୍କ୍ କହିଲା, 'ସେଇଆ ହେଉ ।'

'ଯାହା ହେଉ, ଲୋକେ ପ୍ରଶଂସା କରନ୍ତୁ ଅବା ବାର ନିନ୍ଦା କରନ୍ତୁ, ଯୁବତୀ ଭଉଣୀ ବିଦ୍ୟାଧରୀ ଓ ବୁଢ଼ା ହୋଇ ଆସୁଥିବା କୁବେର ବେହେରା ଓ ଗଇଆଇଲା ନିସାହା-ମାଗତାଙ୍କୁ କନ୍ଦାଇ, ସବୁ ମାୟାମମତା ତୁଟାଇ, ବାପାର ଯତ୍ନ ନେବାକୁ ବିଦ୍ୟାଧରୀର ଚିବୁକ ଧରି ଅନୁରୋଧ କରି ବିମ୍ବାଧରୀ କାନ୍ଦିକାନ୍ଦିକା ଅନୁରୋଧ କରିଥିଲା । ଏହି ଗ୍ରାମରୁ ସହସ୍ର ଝିଅ ତ ବାହାହୋଇ ପରଘରକୁ ଅନ୍ୟାନ୍ୟ ଗ୍ରାମକୁ ଯାଇଛନ୍ତି । କିନ୍ତୁ ସେହି 'ଦରବୁଢ଼ୀ ବିମ୍ବାଧରୀ ପରି କେହି ଏତେ କାନ୍ଦି ନ ଥିବେ, ଲୁହ ଢାଳି ନ ଥିବେ । ଆଶ୍ଚର୍ଯ୍ୟର କଥା !

ଜଣେ ଡବଡବୀ ଦରବୁଢ଼ୀ ଗାଁ ବୋହୂ, ପରଗାଆଁର ଝିଅ, କହିଲା, 'ଫୁଲେଇଟା ବା, ଦେଖେଇ ହଉଛି ।' ଆଉ ଜଣେ ତାକୁ ଜବାବ ଦେଲା, 'ଆଲୋ ଓଲମୀ, ବେଶୀଦିନ ରହିବାରୁ ଗ୍ରାମର ସମସ୍ତଙ୍କ ସଙ୍ଗେ ମମତା

ଲଗିଯାଇଥିଲା । ସବୁ ହୋଇଥିଲା ଆପଣାର; ହେଉ ପଛେ ଏଇ ନିମ୍ବଗଛ ଆଉ ଆଉ ସେଇ ଛୋଟ ମନ୍ଦିର ଭିତରର ହନୁମାନ ଠାକୁର । କାଲିଠାରୁ ହେବେ ପର ।

ସବୁ ଆଗରେ ପ୍ରଶଂସା, ପଛରେ ନାକଟେକା, ମୁହଁମୋଡ଼ା । ବାର ନିନ୍ଦା ଓ ସାନ ଭଉଣୀ, ଜୀବନ-ସଙ୍ଗିନୀ ହସକାନ୍ଦର ସହାୟିକା ବିଦ୍ୟାଧରୀକୁ ଆଲୁଅ ଓ ଅନ୍ଧାରର ଆଶ୍ରାକୁ ଟିକିଟିକି କରିବାକୁ ଏକାକିନୀ ଛାଡ଼ି ବିମ୍ବାଧରୀ ଚାଲିଗଲା ।

ଭଉଣୀମାନଙ୍କର ସମ୍ପର୍କ କାଳକ୍ରମେ ଛାଡ଼ି ଛାଡ଼ି ଯାଏ । ପରଘରୀ ହେଲେ ସମ୍ପର୍କ ଯୋଗସୂତ୍ର କେବଳ ବାପଘର, କଦବା କେମିତି ପତ୍ରାଳାପରେ । କାଳକ୍ରମେ ପିତାମାତା ସ୍ୱର୍ଗବାସୀ ହୁଅନ୍ତି ଅବା ଅପାରଗ ହୁଅନ୍ତି, ବାର୍ଦ୍ଧକ୍ୟ-ଜନିତ କାରଣରୁ, ଅନ୍ୟ ଉପରେ ନିର୍ଭରଶୀଳତା ଦୃଷ୍ଟିରୁ ପୁଣି କେଉଁ କେଉଁ ନୂଆ ଆଗନ୍ତୁ ଅଜଣା କାରଣରୁ, କନ୍ୟାମାନେ ତାଙ୍କର ନିଜ ନିଜର ପରି-ବେଷ୍ଟନୀ ମଧ୍ୟରେ ନୂଆ ନୂଆ ସମସ୍ୟାରେ ବାନ୍ଧିହୁଅନ୍ତି, ପରସ୍ପରକୁ ଝୁରିଲା ସଂସାର ସପନେଇଯାଏ ଦୂରେଇଯାଏ ।

ବୃଦ୍ଧ ପିତା କୁବେରର ଯତ୍ନ ନେବାର ଦାୟିତ୍ୱ ଭଉଣୀ ବିଦ୍ୟାଧରୀ ଉପରେ ନ୍ୟସ୍ତକରି ବଡ଼ ଭଉଣୀ ବିମ୍ବାଧରୀ ଅପରିଚିତର ହାତ ଧରି ନୂଆ ସଂସାର ଗଢ଼ିବାକୁ ଚାଲିଗଲା, ସତେ କି ଚିରଦିନ ପାଇଁ, ଯମପୁର ପରି ଥାନକୁ, ଅଣବାହୁଡ଼ାପୁର ।

ବିଦ୍ୟାଧରୀ ବିଚାରୁଥିଲା, ଆଜି ମଲେ କାଲିକି ଦି'ଦିନ । ଏମିତି, ଦିନଦିନ ହୋଇ ମାସ, ପୁଣି ମାସ ମାସ ହୋଇ ବର୍ଷ କଟିଯାଏ । ଅନ୍ତତଃ ବର୍ଷକୁ ଥରଟିଏ ମନେ ପକାଇବାକୁ ଶ୍ରାଦ୍ଧର ବ୍ୟବସ୍ଥା ନ ଥିଲେ ଉତ୍ତର ପୁରୁଷର ବଂଶଧରମାନେ ନାମଟି ମଧ୍ୟ ଭୁଲିଯିବେ । କୀର୍ତ୍ତି ରଖିଯାଇଥିବା ଲୋକ-ମାନଙ୍କର କଥା ସ୍ୱତନ୍ତ୍ର । କୁବେର ଦେହେର ଓ ତାଙ୍କର ଝିଅ ବିମ୍ବାଧରୀ ଓ ବିଦ୍ୟାଧରୀଙ୍କର ସେପରି କୌଣସି କୀର୍ତ୍ତି ବା ଅପକୀର୍ତ୍ତି ନାହିଁ, ଯେଉଁଥିପାଇଁ ଲୋକେ ତାଙ୍କୁ ସ୍ମରଣ କରିବେ । ସେକଥା ବି ସେମାନେ ଆଶା କରି ନ ଥିବେ; ଏଡ଼େ ନିର୍ବୋଧ ସେମାନେ ନ ଥିଲେ । ବିଦ୍ୟାଧରୀ ବି ନୁହେଁ । କୁବେର ତାର ପିଅନ ବୃଦ୍ଧ, ସେ ନିଜେ ପ୍ରୌଢ଼ା ହୋଇଆସୁଛି । ମରଣ ଯେ-

କୌଣସି ଜଣା ଅଜଣା କାରଣରୁ ହୋଇପାରେ; ବାରଣ କେହି କରିପାରିବେ ନାହିଁ ।

କାନରେ ସତେ ଯେମିତି ବାଜିଯାଉଛି କେଉଁ ଅଶରୀରୀ-ବାଣୀ,—'ଅଛି' ; ଅଛି, ଏ ସମ୍ପତ୍ତିର ରକ୍ଷକ ଓ ବେପାରର ପରିଚାଳକ ଅଛି ଜଣେ ଶାନ୍ତଶିଷ୍ଟ ବୁଦ୍ଧିମାନ କୁମର, ଯିଏ ବିବେକସମ୍ପନ୍ନ ବ୍ୟକ୍ତି । ସେ ହେଉଛନ୍ତି ସ୍ୱର୍ଗପୁର-ବାସିନୀ ଜନନୀ ପାର୍ବତୀ ଦେବୀଙ୍କର ବାଲ୍ୟ-ବିବାହ କାଳର ବେଦମତେ ବିବାହିତ ପ୍ରଥମ ସ୍ୱାମୀ ସେହି ବାଲ୍ୟ-କାଳରେ ସ୍ୱର୍ଗଲୋକକୁ ଗତ ଆମର ନମସ୍ୟ ତାତ କରୁଣାସାଗରଙ୍କର ଭଗ୍ନୀ ସୁମିତ୍ରା ଦେବୀଙ୍କର ଦୁଇ ପୁଅ ଅଜୟ ଏବଂ ବିଜୟଙ୍କ ମଧ୍ୟରୁ ଜଣକୁ ବାପା ପୋଷ୍ୟପୁତ୍ର କରିଆଣିବେ ।"

ନିଜର ନିର୍ବୁଦ୍ଧିତା ପାଇଁ ବିଦ୍ୟାଧରୀ ନିଜକୁ ଶାସିବାକୁ କାନ ମୋଡ଼ି ହେଲା, ଜିଭ ନ ଉଚ୍ଚାରି ମଧ୍ୟ ତାକୁ କାମୁଡ଼ି ଶାସନ କଲା । ମନକୁ ମନ କହିଲା, 'ଆଗରୁ ସାବଧାନ ! ଆଜି ମଲେ କାଲି ତୁ ହେବୁ ଅଜଣା । ସମସ୍ତେ ଆଗରୁ ଯେମିତି ହୋଇଛନ୍ତି । ଅନନ୍ତ ଭବିଷ୍ୟତ, ଯାହା ଦିନେ ଅତୀତର ଅନନ୍ତ ବିସ୍ମୃତିରେ ସତ୍ତା ହଜାଇଛି, ତୁ ବି ବିଦ୍ୟାଧରୀ ସେମିତି ସତ୍ତା ହରାଇବୁ ।'

ବିଦ୍ୟାଧରୀ ହସିଉଠିଲା । ସତେ, କେତେ ନାଟକ-ପ୍ରସଙ୍ଗ-ଗାୟକ-ଲେଖକ ସ୍ୱୁଆଙ୍ଗରେ ଚରିତ୍ର ଚିତ୍ର କଲାବେଳେ ଯେମିତି ସେମାନଙ୍କୁ ଆଣନ୍ତି, ନିଜର କଥନ ତାଙ୍କର ବଚନ କରନ୍ତି, କୁହା ସରିଲେ, ତାମସା ସରିଲେ, ଦର୍ଶକଙ୍କୁ ରସାଇ ହସାଇ ଅବା ତାଙ୍କୁ ତାଙ୍କ ଆଖି ପୋଛାଇ, ରଙ୍ଗମଞ୍ଚରୁ ଖସନ୍ତି ଆର ବାଟରେ, ସେମିତିଆ ଢଙ୍ଗ । ଗୁଡ଼ିଏ ହସ, ଅବା ଛି ଛି ଦେଢ଼ି, ଏମିତି । ଜନତା ଶାନ୍ତ ହୁଏ । କ୍ଲାନ୍ତ ନର୍ତ୍ତକୀ ବିଶ୍ରାମ କରିବାକୁ ଯାଏ ତା'ର ନିରୂପିତ ସ୍ଥାନକୁ । ଏଥର ନିଦ୍ରା । ସବୁ ଅନାବଶ୍ୟକ ଭାବନାରୁ ନିଷ୍କୃତି ମିଳିବ । ତାହାହିଁ କାମ୍ୟ ।

× × × ×

ବିଦ୍ୟାଧରୀର ବେଳ ବୃଦ୍ଧ ହୋଇଆସିଥିବା କୁବେରର ସେବା, ଘରକାମ, ମହାଜନୀ ବେପାର ଓ ଗଲା ଆଇଲାଙ୍କ ଖବର ବୁଝିବାରେ କଟେ । ତା' ଛଡ଼ା ଜମିବାଡ଼ିର ତତ୍ତ୍ୱ ନେଉଥିବା ମୂଲିଆଙ୍କ କଥା ବୁଝେ ।

ଅଧିକାଂଶ ଜମି ଭାଗରେ ଲାଗିଛି । ଅନ୍ତ ହାତଗ୍ରସ୍ତ । କୁବେର କହୁଛି, 'ମା ବିଦ୍ୟା, କାହିଁକି ଆଜ ସେ ଜଞ୍ଜାଳ ? ତୋର ବାହାଘର ହୋଇଥିଲେ, ସେତକ ସବୁ ଜୋଇଁଙ୍କ ନାମରେ ଲେଖିଦେଇଥାନ୍ତି । ବଞ୍ଚିଥିଲେ ତ ଆଶା ଥାଏ । ମୁଁ ବଞ୍ଚିଥିବାଯାଏ ମୋର ତ ଆଶା ଅଛି । ତଦେ ଗ୍ରଳିଶ ଛୁଇଁନି । କପାଳରେ ଥିଲେ କେହି ଉପଯୁକ୍ତ ଜୋଇଁ ଆସିବେ ।'

ବିଦ୍ୟାଧରୀ ଭବିଲା ବାପର ଆଶା ଅସମ୍ଭବ ହେଲେ ବି କେହି ଦୋଷ ଦେଇପାରିବେ ନାହିଁ । ଲୋକେ କହନ୍ତି, ବୟସ ହେଲେ ବୁଦ୍ଧି ପାକଳ ହୁଏ । ଏହା କ'ଣ ପାକଳ-ବୁଦ୍ଧିର ଲକ୍ଷଣ, ନା ପାଗଳ ବୁଦ୍ଧିର ଲକ୍ଷଣ ? ବିଦ୍ୟାଧରୀ ବିଗ୍ଭରିଲା, ମନର କଥାଟି ଆଗ ବାପାଙ୍କୁ କହିବ, ସେ ରାଜି ହେଲେ ଉଦ୍ଦେଶ୍ୟ ପ୍ରଘଟ କରିବ । ସେମାନେ ତେଣିକି ତା'ର ଇଚ୍ଛା ପୂର୍ଣ୍ଣ କରିବେ କି ନ କରିବେ ବିଗ୍ଭର କରିବେ ।

ନିରେଚ୍ଛାରେ କୁବେର ଆଗରେ ମନର ବାସନା ପ୍ରକାଶ କରନ୍ତେ ତୀବ୍ର ଅସନା ଦୁର୍ଗନ୍ଧ ବାସନା ସହସା ନାକରେ ପଶିଲା ପରି ବୁଢ଼ା କୁବେର ଚିହିଙ୍କି ଉଠିଲା । କହିଲା, 'ହଇଲୋ, ବାଇଆଣୀ, ଚଣ୍ଡାଳୁଣୀ, ତତେ ଏପରି ସର୍ବନାଶିଆ ବୁଦ୍ଧି କେଉଁ ଘରଭଙ୍ଗା ପେଞ୍ଚୁଆ ଚଣ୍ଡାଳ ଦେଲା ? ହଇଲୋ, ବଞ୍ଚିଥିବାଯାଏ ଆଶା ଥାଏ, କାଲିକ ତ ବଞ୍ଚିବାକୁ ଆଶା ଅଛି ! କାଲି କାଲି ହୋଇ ଯୁଗ ବିତିଯାଏ । କେତେ ଦିନ, ଯିଏ ଦିନଗତି କରୁଛି ସେଇ ଅଜଣା ଗୋସେଇଁ ପରମେଶ୍ୱରଙ୍କୁ ଜଣା । ଧନ ବିନର୍ବ୍ୟୟ କର ନାହିଁ, ମା !'

ବିଦ୍ୟାଧରୀର ଜିଦି ବଢ଼ିଲା । ସେ ଜାଣିଲା, ତାର ବାପାର ଆଇଷ ସରି ଆସିଲାଣି, ନିଶ୍ଚୟ ମରଣ ତାକୁ ହାତ ଠାରିଲାଣି; ତଥାପି, ଜାଣି ମଧ୍ୟ ନ ଜାଣିଲା ପରି କଥା କହୁଛି । ସେ ତା'ର ଉପଦେଶକୁ ଉପେକ୍ଷା କଲା; ଘରର ଗ୍ଭକରମାନଙ୍କ ହାତରେ ରବିବାର ଦିନ ଗ୍ରାମର ମୁଖିଆମାନଙ୍କୁ ନିମନ୍ତ୍ରଣ ପତ୍ର ଲେଖି ଗୋଟିଏ ଛୋଟ ସଭାର ଆୟୋଜନ କରାଇଲା । ବିଷୟ ହେଲା, "ଗ୍ରାମରେ ଗୋଟିଏ ବଡ଼ ବିଦ୍ୟାଳୟ ଖୋଲାଯିବ । ପରିଗ୍ଭଳନା ସଭାର ସଭ୍ୟମାନେ ଯେପରି ଗ୍ଭହିବେ ପରିଗ୍ଭଳନା କରିବେ । ସେଥିପାଇଁ ବିଦ୍ୟାଧରୀ ଦେବୀ ତାଙ୍କର ସବୁ ଧନ, ପ୍ରାୟ ପଚାଶ ହଜାର ଟଙ୍କା ଦାନ କରିବେ ।

ଅଙ୍ଗା ବିମଳାନନ୍ଦ ଶର୍ମା ମହାପଣ୍ଡିତ ଓ ନୈଷ୍ଠିକ ବ୍ରାହ୍ମଣ ତ ଥିଲେ; କନ୍ୟା ପାର୍ବତୀର ଖଣ୍ଡାୟତ ଯୁବକ କୁବେର ବେହେରଙ୍କ ସଙ୍ଗେ ଜାଣ ଗାନ୍ଧର୍ବ ରୀତିରେ ବିବାହ ହେବାରୁ ସେ ବାହାରେ ଯେତେ ମୁହଁ ଉଡ଼ଙ୍ଗ କାଢ଼ନ୍ତୁ, ଅନ୍ତର ଭିତରେ ନିଜକୁ ଦୋଷୀ, ଜାତିଦ୍ରୋହୀ ଓ ଧର୍ମଦ୍ରୋହୀ ବୋଲି ମଣୁଥିଲେ । ଦିନେ ସେ ତାଙ୍କର ସ୍ତ୍ରୀଙ୍କ ଆଗରେ ପ୍ରକାଶ କରୁଥିଲେ ।...

ସାବିତ୍ରୀ ତାଙ୍କର ଅନୁଶୋଚନାକୁ ଘେନା ନ କରି ତାଙ୍କ ମନରେ ଯାହା ଥାଉ ସାନ୍ତ୍ୱନା ଦେବାକୁ ତୁଣ୍ଡରେ କହିଥିଲେ, ସେ ପାର୍ବତୀ ତା'ର ସଂସାର କରିବ; ସେଥିକି ତମର ଆଉ ତମ ସମାଜର ଯାଏ ଆସେ କ'ଣ ? ତା'ର ପିଲାଙ୍କର ବାହା ନିମିତ୍ୟର ବୋଝ ତାଙ୍କ ମୁଣ୍ଡ ଉପରେ । ଆମର ଏ ଓଡ଼ିଶା ରାଜ୍ୟରେ, ବହୁ ଜାତିରେ ବିଧବା ବିବାହ ତ ପ୍ରଚଳିତ । ବହୁ ଜାତିରେ ନାନା କାରଣରୁ ପରସ୍ପରକୁ ଛାଡ଼ପତ୍ର ଦେଇ ଅନ୍ୟଠାଆମାନଙ୍କରେ ବାହା ହେଉଛନ୍ତି; ସୁଖରେ ବି ଘର କରୁଛନ୍ତି ।...

...ଅବଶ୍ୟ ଶହକେ ଗୋଟିଏ ହୁଏ କି ନ ହୁଏ, ଆମ ସମାଜରେ କେଉଁଠି କେମିତି ସହସ୍ରକରେ ଗୋଟିଏ ଗଲା, ଅନ୍ୟ ଜାତିରେ, ସ୍ୱ-ଜାତିରେ ଉପଯୁକ୍ତ ପାତ୍ର ତ ମିଳିଲେ ନାହିଁ । ହଡ଼ା ବୁଢ଼ା ହାତରେ ଝିଅ ଟେକିଦେବା ଅପେକ୍ଷା ତା' ହାତରେ ଜହର ଦେବା ଭଲ ।...

...ନୁହେ ଆଉ କ'ଣ ? କେତେଦିନ ବା ହତସନ୍ତିଆ ଜୀବନ କଟିବ ! ଅଳପ ଦିନରେ ମଥାରୁ ସିନ୍ଦୂର ଲିଭିବା ସେଇଠୁ ହତସନ୍ତିଆ ଜୀବନ । ହାତ ପିଠିରେ ଲୁହ ପୋଛା । ସେଇଠୁ ଯାହା କହନ୍ତି, ପେଟବିକଳିଆ ଓଲେଇ ଗାଈ ପରି ପର ଘରକୁ ଥୋମଣି ବଡ଼ା—ହାବୁଡ଼େ ପଡ଼ିଲେ ଥୋମଣି ଉପରେ ପାଞ୍ଚଣ ମାଡ଼ ଓ ଠେଙ୍ଗଣି ଉପରେ ଠେଙ୍ଗା ପାହାର । ନିନ୍ଦା ଅପଯଶ ତୁଣ୍ଡରୁ ତୁଣ୍ଡ ଭଷଣ ଶୁଣି ସେକାଳ ରଧା ଗଉଡୁଣୀର ଅପଯଶ-ଗାଉଣାକୁ ବଳେଇ ପଡ଼ିବ ।...

...କି ମିଳିବ ଏପରି ଧନ୍ଦାରୁ ? ଜୀବନଟା ତା'ର ବୃଥା ଛୋଇ-ସାରିଛି । ସେ ଅବୈଧ ସନ୍ତାନଟିଏ ବି ଏ ବୟସରେ ପାଇପାରିବ ନାହିଁ । ସେ କିଛି ଗ୍ରହେ ନାହିଁ । ବୃଦ୍ଧ ପିତା ପୁଣି ତାକୁ ଗତ କାଲି ସନ୍ଧ୍ୟାରେ ବୁଝାଇ କହୁଥିଲ, ସାନ୍ତ୍ୱନା ବି ଦେଉଥିଲ । ପାଖରେ କେହି ନ ଥିଲେ ।

କହିଲ, 'ଆଲୋ ବିଦ୍ୟାଧରୀ, ମୋର ସୁନା ଝିଅ, ସାନ ଝିଅ, ମୁଁ ଦେଖୁଛି, କେତେଦିନ ହେଲା ତୁ ଭଳି ଛଟପଟ ହେଉଛୁ । କାହିଁକି, ଜାଣୁ ? ଜାଣି ନ ଥିବୁ । ଶୁଣ୍, ମୁଁ କହୁଛି—

—ଧନ ଯାହାର ନାହିଁ, ଯେକୌଣସି ଉପାୟରେ ସେ ଅର୍ଜନ କରିବାକୁ ବ୍ୟାକୁଳ । ମୁଁ ଯେମିତି କରି ଠୁଳେଇଛି, ତମମାନଙ୍କୁ ବଢ଼ାଇ ଗ୍ଚାରି-ଅକ୍ଷର ପଢ଼ାଇ, କୌଣସିମତେ ସଞ୍ଚୟ କରି ଏକକୁ ଦୁଇ, ଦଇକୁ ଗ୍ଚାରି କରିବାକୁ ଶିଖାଇଛି । ପୁଣି ସେତକ ତମର ଭବିଷ୍ୟତ ପାଇଁ ସଞ୍ଚିବାକୁ ବତାଇଛି । ବିଘାଧରୀ ତାର ଧନ ନେଇ ମୋ'ଠାରୁ ବି ନେଇ ସଂସାର ଗଢ଼ିବାକୁ ଗ୍ଚାଲିଗଲା ।

—ତୋ ଚେଷ୍ଟା ବିଫଳ ହେଲା । ମନଲକ୍ଷି ପୋଷ୍ୟ-ପୁତ୍ରଟିଏ ବି କରି-ପାରିଲୁ ନାହିଁ । କେହି ଦେଲେ ନାହିଁ । ମଣିଷଛୁଆଟିର ମୂଲ୍ୟ ଏବେ ବୁଝିଲୁ ତ ମା ? ଧନରେ ତୁ ସେହି ମଣିଷପିଲାଙ୍କୁ ଶିକ୍ଷା ଦେବାକୁ ଉପାୟ ଫାନ୍ଦୁଛୁ । ଭଲ । ସେମାନେ ଶିକ୍ଷିତ ହେବେ, ଚାଲାଖ-ଚତୁର ହେବେ, ଆମ ପରିକା ବେପାରୀମାନଙ୍କ ବେପାର ବୁଡ଼ିବ । ତୋ ପରି ନିର୍ବୋଧ ଆଉ କିଏ ଅଛି ମା ବିଦ୍ୟାଧରୀ ? ତୋ ନାମଟା କାହିଁକି ଯେ ତୋର ଅଜା 'ଓଲମୀ' ନ ରଖି ବିଦ୍ୟାଧରୀ ରଖିଲେ କେଜାଣି ! ତୋ ବୋଉ ପାର୍ବତୀ, ସେ ତ ଆଜି ଶିବପୁରରେ, ତାଙ୍କୁ ଦୋଷିବି କିପରି !'

**ବିଦ୍ୟାଧରୀ** ତଳକୁ ମୁହଁପୋଡ଼ି ମାତା ଧରିତ୍ରୀକୁ ଗ୍ଚାହିଁଲା । ଟିକିଏ ମୁଡୁକେଇ ହସିଲା ମନକୁ ମନ । ନୀରବ ଭଷାରେ ପଗ୍ଚାରିଲା, ବାପାଙ୍କର ନିର୍ବୋଧ-ପଣିଆର ଭଷଣ ଶୁଣୁଛଟି ମା, ଏମିତିକା କଥା ସହିହେଉ ନାହିଁ । ତ୍ରେତୟା ଯୁଗରେ ଥରେ ଅକଥା ଶୁଣି ଫାଟିଥିଲ, ସେ ପାତାଳପୁରକୁ ପଶି-ଯାଇଥିଲେ । ସେମିତି ମୁଁ ନିଷ୍ପେ କରିବି । କିନ୍ତୁ ଆଉ, ଅତି ବୁଢ଼ା ବାପଟା ମୋର କାନ୍ଦିବ । ଆଖିରୁ ଲୁହ ତ ଝରିବ ନାହିଁ, ଲହୁ ଝରିବ । ମୋ ବୋଉ ଶିବଲୋକରୁ ମତେ ସପନରେ ଝିଙ୍ଗାସିବ । ତେଣୁ ସେସବୁ ଥାଉ, ଯାହା ବିଗ୍ଚାରିଛି ସେଇଆ କରିବି । ଶିକ୍ଷାଳୟର ନାମ ଦେବି—

'ପାର୍ବତୀ ଶିକ୍ଷାଳୟ' । ସେଠାରେ କ'ଣ ସବୁ ଶିକ୍ଷା ଦିଆଯିବ ତାହା ଗ୍ରାମର ଲୋକେ ନିର୍ବାଚନ କରିଥିବା କାର୍ଯ୍ୟକାରୀ ସମିତିର ସଭ୍ୟମାନେ

ସ୍ଥିର କରିବେ । ସେଥିରେ ତୁ ଲୋ ବିଦ୍ୟାଧରୀ, ନିଜେ ଜଣେ ସଭ୍ୟ ରହିପାରୁ ଅବା ନ ରହିପାରୁ ।

ବିଦ୍ୟାଧରୀ କହିଲା, 'ସେଇଆ ମୁଁ ନିଶ୍ଚୟ କରିବି, ବାପା, ଆଉ ତମେ ? ଏତେ ଧନ-ସମ୍ପତ୍ତି, ବାସନ କୁସନ, ଅଳଙ୍କାର ଇତ୍ୟାଦି ସମ୍ପତ୍ତି ତଥାପି ପାଖରେ ରଖିଛ, କେବେ କେମିତି ବେପାର ବି କରୁଛ । ମତେ ସେଥିପାଇଁ ଲୋଡ଼ୁଛ । ବଡ଼ କୋଲପଟିକୁ ତମରି ଆଗରେ ବଡ଼ କୁଞ୍ଚିରେ ଖୋଲୁଛି, ତମ କାମ କରୁଛି । ସିନ୍ଦୁକ ଭିତରେ ଥିବା ବାକ୍ସ ଖୋଲୁଛି, ତମ ଟଙ୍କା ରଖୁଛି, ଫେରସ୍ତ ଦେବାକୁ ଥିବା ଗହଣା ତମକୁ ଦେଖାଇ, ଯାହାର, ତାକୁ ଫେରସ୍ତ ଦଉଛି ।

'ନୂଆ ବନ୍ଧକ ତ ରଖାଯାଉନାହିଁ । ଲୋକେ ଯେତ୍ତେ ଆତୁରିଆ ହୋଇ ଆସିଲେ କି ହେବ, ହତାଶ ହୋଇ ଫେରୁଛନ୍ତି । ଜମି ତେଣେ ନିଲାମ ଉପରକୁ ଯାଉଛି । ବାଟଖର୍ଚ୍ଚ ପାଇଁ ତ ଜୋଇଁ ଯେ ହେବେ ତାଙ୍କର ଗୁହାଣ-ମେଣ୍ଟଣ କରିବାକୁ ସମର୍ଥ ନ ହୋଇ ଯୁବତୀ ଝିଅର ବାହାଘର ହୋଇ ପାରୁନାହିଁ । ତା ବୋଉ କାନ୍ଦୁଛି, ବାପ ମୁଣ୍ଡରେ ହାତ ଦେଇ ଭାବୁଛି, କି ବୁଦ୍ଧି କରିବି ? ଭିଟାଥାଳି ଜମି ବିକିବି !'

ବିଦ୍ୟାଧରୀ ଚିହିଙ୍କି ଉଠିଲା । ଭାବିଲା, ତା ଅପା ବିଦ୍ୟାଧରୀ କଥା— 'ହଉ, ଅପାଟି ମୋର ଭଲରେ ଥାଉ । ପାଞ୍ଚ ପୁଅର ମା ହେଉ, ମୁଁ ବି ଭଲରେ ରହିବି । ମୋ ସମ୍ପତ୍ତି ସହସ୍ର ପିଲାଙ୍କ ପାଇଁ ଦାନ କରିବି । ସେମାନେ ହେବେ ମୋର ଟିକିଟିକି ଭାଇଭଉଣୀ । ମତେ ଅପା ବୋଲି ତ ଡାକିବେ, ଆଉ କୁବେର ବେହେରଙ୍କୁ ଡାକିବେ 'ମଉସା' ।

ଦିନଟିଏ ବି ବିଳମ୍ବ କରାହେବ ନାହିଁ । ଆସନ୍ତା କାଲିଠାରୁ 'ପାର୍ବତୀ ବିଦ୍ୟାଳୟ'ର କାର୍ଯ୍ୟ ଆରମ୍ଭ କରାହେବ । କାର୍ଯ୍ୟକାରୀ କମିଟି ଓ ସଭ୍ୟ ନିର୍ବାଚନ, ସେଇଠୁ ସଭାପତି । ତା'ପରେ ବିଦ୍ୟାଧରୀ ଭାବିଲା, ସେ ହେବ ନିଶ୍ଚିନ୍ତ । ସେ ଆଗ ସଭା ଡକାଉ ତ !

× × × ×

ସେଇଆ କରାହେଲା ତୂରୀ ଫୁଙ୍କା ଢୋଲ ଢୋଲ ପିଟାଯାଇ ଅତି ଆଗ୍ରହ ଓ ଉତ୍ସାହରେ ଗ୍ରାମବାସୀଙ୍କୁ ଜଣାଇ ଦିଆଗଲା ଯେ ଗୋଟିଏ ଗୁରୁତର ବିଷୟର ନିଷ୍ପତ୍ତି କରାହେବ; ତେଣୁ ଗ୍ରାମର ମୁଖିଆ ଲୋକମାନେ ମହାବୀର ହନୁମାନଙ୍କ ମଣ୍ଡପ ପାଖରେ ସମବେତ ହେବେ । ପ୍ରସାଦ ପାଇବେ ଓ ସେମାନଙ୍କର ସୁଚିନ୍ତିତ ମତ ଦେବେ । ଏ ସଭା ଶ୍ରୀଯୁକ୍ତ କୁବେର ବେହେରା ମହାଜନ ଓ ତାଙ୍କର ଦୟାଶୀଳା ଗୁଣବତୀ ତପସ୍ୱିନୀ କନ୍ୟା ବିଦ୍ୟାଧରୀ ଦେବୀଙ୍କର ଅନୁରୋଧରେ କରାଯାଉଛି । ଏଥିକୁ ସାକ୍ଷ୍ୟ ସର୍ବ-ମଙ୍ଗଳକାରୀ ରାମଭକ୍ତ ପବନନନ୍ଦନ ହନୁମାନ, ମାରୁତି । ଆନନ୍ଦେ ଏକବାର ହରିହରି ବୋଲରେ ଭାଇ ।

'ହରିବୋଲ' ନାଦରେ ଗ୍ରାମଦାଣ୍ଡ ତଥା ଗ୍ରାମ ପ୍ରକମ୍ପିତ ହେଲା । ପ୍ରସାଦ ନେବାକୁ କେତେ ମାଇପେ ମଧ୍ୟ ଆସିଥିଲେ । ନ ଆସନ୍ତେ କିପରି ! ବିଦ୍ୟାଧରୀଙ୍କର ଉପସ୍ଥିତି ସେମାନଙ୍କୁ ଆଗ୍ରହୀ କରିଥିଲା, ପ୍ରସାଦ ଓଟାରି-ଆଣିଥିଲା ।

ଦେଖଣାହାରୀ ଓ ପ୍ରସାଦ-ଲାଳସୀମାନେ ବିଦାୟ ହୋଇଗଲେ । ମୁରବିମାନଙ୍କୁ ତ ଉଦ୍ଦେଶ୍ୟଟା ଆଗରୁ ଜଣାଇ ଦିଆଯାଇଥିଲା । ସେମାନେ ଅଟକି ରହିଲେ । ସେମାନଙ୍କ ମଧ୍ୟରେ ନାତିଦୀର୍ଘ ସ୍ୱରରେ କ'ଣ ସବୁ ଆଲୋଚନା ହେଲା । କଥା କଟାକଟି । ଉତ୍ତେଜନା । ଜଣେ ଧନ ଦେବାକୁ ପ୍ରସ୍ତୁତ ଓ ଜଣଜଣ କରି ସମସ୍ତେ ନେଇ ନିଜର ପ୍ରସ୍ତାବ ପ୍ରକାରେ ନିଜେ ସର୍ବ-ସାଧାରଣଙ୍କର ମଙ୍ଗଳରେ ବ୍ୟୟ କରିବେ । ଆବଶ୍ୟକ ହେଲେ ସେ ତାଙ୍କର ବିଶ୍ୱାସଭାଜନ ଜଣକୁ ବା ତହୁଁ ଅଧିକ ଭଦ୍ରଲୋକଙ୍କର ସାହାଯ୍ୟ ନେବେ ।

ବୃଦ୍ଧ କୁବେର ଆନନ୍ଦରେ ହସି ହସି ନୟାନ୍ତ ହେଲା । ଦୁଇହାତ ଯୋଡ଼ି କପାଳରେ ହାତ ଲଗାଇଲା । କମ୍ପିତ ସ୍ୱରରେ ବିଦ୍ୟାଧରୀକୁ କହିଲା, ଆଲୋ ଝିଅ, ତୋର ସବୁଠାରୁ ବଳି ଅଧିକ ବୁଦ୍ଧି ଓ ବିଦ୍ୟା ହେବ ବୋଲି ତୋ ଅଜା ପରା ଗଣନା କରି, ନିଶ୍ୱାସ ବାରି, ଖଡ଼ି ପକାଇ ପୁଣି ନିଶ୍ୱାସ ବାରି ତୋ ନାମ ଦେଇଥିଲେ ବିଦ୍ୟାଧରୀ । ସହସ୍ର ଥର ତତେ ତୋ ମା ଏକଥା କହିବାର ମୁଁ ଶୁଣିଛି । ପାଖରେ ଧନଲକ୍ଷ୍ମୀ ହେଲାରୁ ଗଣେଶ ଓ ସରସ୍ୱତୀ ତତେ ନିଶ୍ଚେ ଛାଡ଼ି ପଳାଇଲେ । ହଉ, ଯାଉନ୍ତୁ । ଦରିଦ୍ର ଛାତ୍ର-ମାନଙ୍କର ଉପକାର କରିବାର ଅନ୍ୟ ଉପାୟ ଅଛି ।

ବିଦ୍ୟାଧରୀ ପଚାରିଲା, କି ଉପାୟ ଅଛି, ବାପା ? ସେଇଆ କୁହନ୍ତୁ ମୁଁ କରିବି ।

କୁବେର କହିଲା, "ବଡ଼ ସହଜ ମା, ସେଥିରେ ଝଂ-ଝଟ୍ ନାହିଁ । ବେପାର ବନ୍ଦ କର । ଯେଉଁମାନେ କରଜ ଧନ ଫେରସ୍ତ ଦେଇ ତାଙ୍କ ବନ୍ଧା ଦେଲା ଚିଜ ନେବାକୁ ଆସୁଛନ୍ତି ତ ଭଲ । ନୂଆ ବନ୍ଧକ ଓ କରଜ ବେପାର ବନ୍ଦ ହେଉ, ଯଥାସମ୍ଭବ । ନାଗ-ଚୁଡ଼ୁନ୍ଦ୍ରା ଧରିଲା ବେପାର ପରି ଯେ । ମୁଁ କହୁଛି, ଏପରି କରିବା ବୁଦ୍ଧି ଛାଡ଼ । ମନଖୁସିରେ ଦୁଃଖୀରଙ୍କୀଙ୍କୁ ଦେଇ ବିଦାକର । ଭୁଲିଯା ଓ ନିଶ୍ଚିନ୍ତ ହ ।"—

ବିଦ୍ୟାଧରୀ ବୃଦ୍ଧ କୁବେର କଥା ବୁଝିଲା । ଅତି ମୂଲ୍ୟବାନ ଉପଦେଶ । ମହୁମାଛି ଅଗଣନ ଫୁଲରୁ ମହୁ ଆଣି ନିଜେ ସଞ୍ଚି ରଖିଲା ପରି ବହୁଲୋକଙ୍କ ଧନ ନୁହେଁ, ସମ୍ପତ୍ତି ଆଣି ତାଙ୍କରି ଧନ ତାଙ୍କୁ ଦେଇ ତାଙ୍କର ଅମିତବ୍ୟୟିତା ପାଇଁ ତାଙ୍କଠାରୁ ସୁଧ ରୂପରେ ଢୋରିମାନ। ଖଏ ଚ କରା-ଯାଇଛି । ଏବେ ଦୁଃଖୀ-ଦରିଦ୍ର ଲୋକଙ୍କର ପିଲାଙ୍କ ପାଠପଢ଼ା ପାଇଁ ପ୍ରଧାନ ଶିକ୍ଷକଙ୍କର ସୁପାରିସ୍‌କ୍ରମେ ଦାନ କରଯାଉଥିଲା ।

ଦେବାକୁ ବୃଦ୍ଧ ପିତା କୁବେର ବିରକ୍ତ ହୋଇ ମନା କରିଦେଲା; କହିଲା, "ମୋର ଶେଷ ଉପଦେଶ ତୁ ଶୁଣ୍ ବିଦ୍ୟାଧରୀ, ତୁ ତ ଜାଣୁ, ମୋର ମରଣ ପରେ ତୁ ମୋର ଅବଶିଷ୍ଟ ସବୁ ଧନର ଉତ୍ତରାଧିକାରିଣୀ ହେବୁ । ସେତକ ମୁଁ ଗୁମାସ୍ତାଙ୍କ ହାତରେ ଲେଖାଇ ତହିଁରେ ଦୁଇଜଣ ସାକ୍ଷୀଙ୍କର ସ୍ୱାକ୍ଷର ନେଇ, ମୁଁ ନିଜେ ସାଧାରଣ ଧାଡ଼ି ସିନ୍ଦୁକରେ ରଖିଛି ସେହି ଛୋଟ ବାକ୍ସଟିରେ । ମୁଁ ମଲାପରେ ତୁ ହେବୁ ସେ ସବୁର ଅଧିକାରିଣୀ । ଏବହୁଁ ତୁ କାହିଁକି ତୋ ଧନ ବିନବ୍ୟୟ କରିବୁ ?"

ବିଦ୍ୟାଧରୀ କହିଲା, "ଆଉ ମୁଁ ତମର ଅବାଧ୍ୟ ହେବି ନାହିଁ, ବାପା, ଆଉ ଅଧିକ ଧନ ଅର୍ଜନ ଓ ସଞ୍ଚୟ କରିବାକୁ ମନ କରିବି ନାହିଁ । ମୁଁ ଆପଣଙ୍କର, ତେଣୁ ମୋ'ର ଅର୍ଜିଲା ସବୁ ଧନ ଆପଣଙ୍କର ।"

କୁବେର ହସିଉଠିଲା । ଥରୁଥରୁ ଦୁର୍ବଳ ହାତରେ ଦରବୁଢ଼ୀ ବିଦ୍ୟାଧରୀର ମୁଣ୍ଡରେ ହାତ ଥାପି ଧୀରେ ଆଉଁସି ଆଉଁସି କହିଲା, "ଏକା

କଥା ମା, ମୋ ଅନ୍ତେ ତୁ ପଛ ମୋର ଉତ୍ତରାଧିକାରିଣୀ ! ତୋ ଅପା ବିଦ୍ୟାଧରୀକୁ ତା' ଶ୍ୱଶୁର ଘରକୁ ସନ୍ତୁଷ୍ଟ କରିବାକୁ ଯାହା ଦେବାର ତ ଦେଇ ସାରିଛି । ବାକି ଯାହା, ତୋ ବାପା ସହିତେ, ସବୁ ତୋ'ର ।

''ଦେଖ୍ ଲେ ମା ଏ ସଂସାରର ରୀତି । ମୁଁ ଯାହା କହିଲି ସେତକ ଲେଖିଦେଇଛି । ଯାହା ଲେଖିଦେଇଛି ତାକୁ ତ ଆଉ ନିଜେ ଆଖିରେ ପର୍ଖି ପରଖି ପାରୁ ନାହିଁ । ଯାହା ହେବାର ହୋଇଥିବ । ଏଥକୁ ମୁଁ ଦାୟୀ ନୁହେ । ଦାୟୀ ସେ ଦଇବ, ଯେ ମୋତ ବୟସ ବଢ଼ାଇଲା, ଅଙ୍ଗ ଅଚଳିଆ କଲା, ପୁଣି ଦୃଷ୍ଟିଶକ୍ତି ଛିନିନେଉଛି । ମୋ'ର କି ଦୋଷ । ଦାୟୀ ସୁବର୍ଣ୍ଣମେରୁ ମହାଦେବ ଓ ସୁରେଶ୍ୱରୀ ଠାକୁରଣୀ......।''

ବିଦ୍ୟାଧରୀ ମଣିଲା, 'ବାପାଙ୍କ ଏ ବୟସ ବୃଦ୍ଧି ପାଇଁ କ'ଣ ଏଣୁ ତେଣୁ ବକି ତାକୁ ସାନ୍ତ୍ୱନା ଦେବାକୁ ବୁଦ୍ଧି ଶିଖାଉଛନ୍ତି । ସେଇଆ ହେଉ, ସେ ଯାହା କରୁଛନ୍ତି କରନ୍ତୁ । ସେ ଯାହା କହୁଛନ୍ତି ମୁଁ ବିଦ୍ୟାଧରୀ ସେଇଆ କରିବି । ଭଲ ହେଉ ବା ମନ୍ଦ ହେଉ, ଅନ୍ୟ କାହାର ପରାମର୍ଶ ଲୋଡ଼ା ନାହିଁ ।

ବାଧ୍ୟ ଶିଶୁ କନ୍ୟାଟି ପରି ତା'ର ଲୁହା ଟ୍ରଙ୍କଗୁଡ଼ିକରେ ତାଲା ପକାଇ ଟ୍ରଙ୍କ ଦୁଇଟି କୁବେରଙ୍କର ବିରାଟ କାଠ ବାକ୍ସରେ ଗୋଟିଏ ପାଖରେ ରଖିଲା । ଚାବି ଦିଓଟି ବାପର ଚାବି ନେନ୍ଥାରେ ଗୋଟାଏ ସ୍ୱତନ୍ତ୍ର ରିଙ୍ଗ୍‌ରେ ଗଳାଇ ବାପକୁ ଚିହ୍ନାଇଦେଲା । ସହଜରେ ଚିହ୍ନା ପଡ଼ିବ ବୋଲି ସେହି ରିଙ୍ଗ୍‌ରେ ନାଲି ସୂତା ଗୁଡ଼ାଇଦେଲା । ବାପ ହାତକୁ ବଡ଼ ଚାବି ନେନ୍ଥାଟି ବଢ଼ାଇ ଦେଇ ନିଜେ ନିଶ୍ଚିନ୍ତ ହେଲା । କୁବେର ସନ୍ତୁଷ୍ଟ ହେଲା ।

× × × ×

କୁବେର କେବଳ ସନ୍ତୁଷ୍ଟ ହେଲା କହିଲେ ଯଥେଷ୍ଟ ହେବ ନାହିଁ । ସେ ଆନନ୍ଦିତ ହେଲା, ଏଇଥିପାଇଁ ଯେ, ତା'ର ଧନ ବଢିଛି । କିଏ ସେହି ଧନର ଉତ୍ତରାଧିକାରୀ ହେବ, ସେ ବିଚାର ତ ପରର କଥା; କିନ୍ତୁ ଏବେ ଜୀବିତ ଥିବାଯାଏ ତ ସେ କୁବେର ବେହେରା । ସେଇ ତ ତା'ର ଆନନ୍ଦ । ସେତିକିରେ ତା'ର ଗର୍ବ ।

'ଏତକ ସମ୍ଭବ ହେଲା ତମର ଯୋଗ୍ୟ କନ୍ୟା ଗୋଲବସରୀ ଝିଅ ବୁଦ୍ଧିମତୀ ବିଦ୍ୟାଧରୀଟି ପାଇଁ ।' ଶିବପୁରରେ ମା ପାର୍ବତୀ ଠାକୁରଣୀଙ୍କୁ ଏହା

ଅବଶ୍ୟ କହିଦବ ! ଏହିପରି ବହୁ ଚିନ୍ତା କରି, କେବଳ ସୁଖର ଜାଗ୍ରତ ସପନ, ଯାହା କେବଳ ଆଶାୟୀ ଅପାରଗର ଆଶା ଓ ଆନନ୍ଦରେ କିଛି ସମୟ ମଗନ ରହି କୁବେର ସୁଖର ସପନରେ ନିମଗନ ହେଲେ କ୍ଳାନ୍ତିଜନିତ ନିଦ୍ରା ପାଇଁ ଯାହା ଅଭିଶପ୍ତକୁ ଆଶୀର୍ବାଦ । ବୃଦ୍ଧ କୁବେର ଏପରି ମଣିଲେ ।

ଆଇଲା ଗଲା ଲୋକେ ଧୀରେ ଧୀରେ ଅବଗତ ହେଲେ ଯେ କୁବେରଙ୍କର ବେପାର ପୂର୍ବପରି ଚାଲିବ, କିନ୍ତୁ ତାଙ୍କର କନ୍ୟା ବିଦ୍ୟାଧରୀ ବେପାର ବନ୍ଦ କଲେ; ଯେଉଁମାନଙ୍କର ଯାହା ବନ୍ଧକ ପଡ଼ିଛି, ସେମାନେ ତାଙ୍କର ସାଧ୍ୟ-ମତେ ସାମାନ୍ୟ ସୁଧ ଓ ମୂଳ ଦେଇ ଋଣ ପରିଶୋଧ କରନ୍ତୁ ଓ ଜିନିଷ ଫେରସ୍ତ ନିଅନ୍ତୁ ।

ଆସିଲେ, କେହି କେହି କୃତଜ୍ଞତା ସ୍ୱୀକାର କରି ନିଜର ଦୁଃଖ ଓ ଅପାରଗତା ପାଇଁ ନେଇ ପାରୁ ନ ଥିଲେ ବୋଲି କୈଫତ୍ ଦେଇ ଜିନିଷ ନେଇ, ବାଟରେ, ବାପ ଝିଅ ଯେ ଅତି ଲୋଭୀ, ମଲେ ମଲାବେଳେ ସବୁ ସଙ୍ଗରେ ନେଇଯିବେ, ମକ୍ଷିଶ୍ଳେଷ ଦି'ଟା ବୋଲି ସହଯାତ୍ରୀଙ୍କ ଆଗରେ ସମା-ଲୋଚନା କରି ହେଣ୍ଡି ମାରି କାନ୍ଧରେ ମୁକୁଳା ଦରବ ଝୁଲାଇ ଲମ୍ଫଝମ୍ଫ ପାହୁଣ୍ଡ ଚାଲି, ନିଜର କରମତି ଓ ମରଦପଣିଆ ଘରଣୀଙ୍କ ଆଗରେ ଓକାଳିବାକୁ ପଛକୁ ଥରେ ଫେରି ନ ଚାହିଁ ଛୁ...।

କିଏ କ'ଣ ଭବିଲା ଜାଣିବାକୁ ଓ କିଏ କ'ଣ କହିଲା ଶୁଣିବାକୁ ଏବଂ ନିଜର ସ୍ଥିର ସଂକଳ୍ପ ବଦଳାଇବାକୁ କୁବେର ଓ ବିଦ୍ୟାଧରୀ ଯିବେ ବା କାହିଁକି ? ନିର୍ଦ୍ଦିଷ୍ଟ ସମୟର ସୀମା ପରେ ମଧ୍ୟ ଯେବେ ଯେଉଁମାନେ ଆସିଛନ୍ତି ସେମାନଙ୍କର ବନ୍ଧାଦେବା ସମୟ- ସୀମାର ବହୁଦିନ ପରେ, ବସ୍ତୁ ପାଖରେ ଥିଲେ କିଛି ସୁଧ ଓ ମୂଳଧନ ନେଇ ବସ୍ତୁ ଫେରସ୍ତ ଦିଆଗଲା । ସେଥିପାଇଁ କୁବେର ଯେତିକି ଖୁସି, ବିଦ୍ୟାଧରୀ ତତୋଧିକ । କୁବେର ବିଦ୍ୟାଧରୀର ଜାଣ, ବୁଢ଼ା-ପୁଅଟିଏ । ବୁଢ଼ା ବାପକୁ ସୁଖୀ ଦେଖିଲେ ସେ ଖୁସି । କେତେ ଥର ସେ ଶିବପୁରବାସିନୀ ମା ପାର୍ବତୀ ଦେବୀଙ୍କୁ ଏବେ ସେ ସପନ ଦେଖୁଛି । ସେ କହୁଛନ୍ତି, ତୋ'ରି ନିର୍ଭରରେ ତାଙ୍କୁ ମୁଁ ଛାଡ଼ି ନିଶ୍ଚିନ୍ତ ରହିଛି ମା ବିଦ୍ୟାଧରୀ, ନୋହିଲେ ତ, ତାଙ୍କୁ ପାଖକୁ ନେଇଆସନ୍ତି ମା, କାହିଁକି ସେ ଦହଗଞ୍ଜ ହୁଅନ୍ତେ । ପୁଣି ତାଙ୍କ ପାଇଁ ତୁ !

ସେହି ଅଶରୀରୀ ପାର୍ବତୀ—ମାତାଙ୍କର ଅଶୁଣା-ବାଣୀର ଉତ୍ତର ବିଦ୍ୟାଧରୀ ଦେଲା ଭବନାର ନୀରବ ଭଷାରେ : 'ସବୁ ସେଇଠି ପଡ଼ିଥାଉ ଏଠି ଅକାମୀ । ଏକା ଏକା ଗୁଲିଆ ଏଠିକି । ସବୁ ପାର୍ଥିବ ଦରବ ଏଠାରେ ଅକାମୀ । ଏ ପୁରରେ ତମର କର୍ମର ବିଗ୍ରହକ ହେବ ତମର ସେପୁରବାସ ଆମ୍ଭା, ହାତରେ ନ୍ୟାୟ, ଧର୍ମ ଓ ବିବେକର ନିକିତି । ସେମାନଙ୍କର ବିବେକ ତଉଲ କରିବ, ଦୋଷର ପ୍ରକାର ପରିମାଣ ଓ ଉପଯୁକ୍ତ ଦଣ୍ଡ ସ୍ଥିର କରିବ । ନିହିବ । ନିଷ୍କୃତି ତ ମିଳିବ ନାହିଁ । ମିଳିବ ନାହିଁ, ମିଳିବ ନାହିଁ—ଏହା ତ୍ରିବାର ସତ୍ୟ !

ବିଦ୍ୟାଧରୀ ଏହିପରି ଚିନ୍ତାରେ ଗତିରେ ତା'ର ପ୍ରକୋଷ୍ଠରେ ଛଟପଟ ହେଉଣୁ ଗତି ବଢ଼ିବଢ଼ି ଯାଉଥିଲା । କୁକୁରଟି ଛଡ଼ା ଆଉ ତ ଖଞ୍ଜା ଭିତରେ କେହି ନ ଥିଲେ । ଦିନ ଥାଉଣୁ ବାରିଆଡ଼ର କବାଟ ବନ୍ଦ ହୋଇଥିଲା । କାହିଁକି ତେବେ ମନଟା ତଥାପି ଛଟପଟ ଛାନିଆ-ତରଛ ହୋଇ-ଉଠୁଥିଲା । ଦମ୍ଭ ଦୋହଲୁଥିଲା ।

ବିଦ୍ୟାଧରୀ ବୁଝିପାରିଲା ନାହିଁ କାହିଁକି ଏ ଅଜଣା ଛନକା । ନିଜ ପ୍ରକୋଷ୍ଠର ଦୁଇ ପାଖର ଯାଉଁଳି-କବାଟ ଭିତରୁ ବନ୍ଦ କରି ସେ ନିଶ୍ଚିନ୍ତ ହେଲା । ଉପର ଝରକା ଗୁଡ଼ିକର ପାନିଆଲିର ତେରଛ ଫାଙ୍କବାଟେ ପବନ ବ୍ୟତୀତ ଆଉ କିଛି ଘର ଭିତରେ ପ୍ରବେଶ କରିବ ନାହିଁ । ମନେ ହେଲା, କେଉଁ ଅଶରୀରୀ ମହାରକ୍ଷୀ ରୂପ ଧରି ତାଙ୍କ ଛାତି ଉପରେ ଦିବ୍ୟସୁନ୍ଦର ମଲ୍ଲୀଫୁଲ ପରି ଧୋବ ଫରଫର ମଣିଷ ଶିଶୁଟିଏ ଆଣି ତା'କୁ ଦେଉଛନ୍ତି । କହୁଛନ୍ତି, 'ନେ, ଯାକୁ ସେ ହତଭଗିନୀ ଅବୈଧ ରୀତିରେ ତୋ ପାଇଁ ପେଟରେ ତ ଧରିଥିଲା; ନିନ୍ଦାମାନ ସହିବାକୁ ପ୍ରସ୍ତୁତ ନ ହୋଇ ହୁଏତ ଆମଘାତିନୀ ହୋଇଥାନ୍ତା । ଗର୍ଭ ଭିତରେ ଏହାକୁ ନାଶ କରିବାକୁ ମୋ ପାଖରୁ ଔଷଧ ନେଇଥାନ୍ତା । ସେତେବେଳେ ଅଜଣା ଶିଶୁର ଜୀବନ ରକ୍ଷା ଓ ତା'ର ମାତାର ଜୀବନ ଏବଂ ସମ୍ମାନ ପାଇଁ ବହୁଧନ ବ୍ୟୟ କରି ଦୁହିଁଙ୍କର ଜୀବନ ବଞ୍ଚାଇଲି । ଏହାର ଜନ୍ମଦାତ୍ରୀ ଏବେ ଅନ୍ୟ ଘରର ସୌଭଗିନୀ ଲକ୍ଷ୍ମୀ ଘରଣୀ ...

ବିଦ୍ୟାଧରୀ ଚିହିଁକି ଉଠିଲା । ଦୀପର ଆଲୁଅ ଲିଭିଛି, କିନ୍ତୁ ଛୋଟ ଟର୍ଚ୍ଚ ଆଲୁଅ ମୁଣ୍ଡ ପାଖରେ ଥୁଆ ହୋଇଛି । ଆଲୁଅ ଟିପି ଗୁରିଆଡ଼କୁ

ବୁଲଇଲା । କେହି ନାହିଁ, କିଛି ନାହିଁ । ବୁଲା କୁକୁରଟି ଖଟତଳୁ ବାହାରି ଆଖି ମିଟିମିଟି କରି ଏଣେ ତେଣେ ଗୁହୁଁଛି । କାହିଁ ସେ ସ୍ତ୍ରୀଲୋକଟି ଅବା ତା'ର ଝିଅ ? କେହି ନାହିଁ । ଖାଲି ପୋଷା କୁକୁରଟି ବୁଲାର ଆଖି ଦୁଇଟି ଝଳସି ଦଳ ଉପର ଓ ଏକଡ଼ ସେକଡ଼ ହେଉଛି, ମୂଷା ଉଣ୍ଡୁଛି ।

ସମସ୍ତେ ବିଫଳ ହେଲେ । ବିଦ୍ୟାଧରୀ ନିଜ ଉପରେ ତଥା ଅନ୍ୟମାନଙ୍କ ଉପରେ ବିରକ୍ତ ହେଲା । ଛି, ଯାହା ତ ହେବାର ହୋଇସାରିଛି, ପୁଣି ଯାହା ତ ହେବାର ଥିବ ହେବ । ସେ କାହିଁକି ଆଗହୁଁ ଛଟପଟ ହୋଇ ଅଧାପ୍ରାଣ ହେବ । ସେ ଏଥର ନିଶ୍ଚିନ୍ତ ହୋଇ ଶୋଇବ । ବିଦ୍ୟାଧରୀ ଆଖି ବୁଜିଲା—ସତେ ତାକୁ ନିଦ ହୋଇଗଲା ।

ବିଦ୍ୟାଧରୀର ମୁଦ୍ରିତ ଆଖିକୁ ଗର୍ତ୍ତିରେ ନିଦ୍ରା ଆସୁନାହିଁ । ଆଖି ଖୋଲିଲେ, ଯାହା କହନ୍ତି, ଘର ଭିତର ଅନ୍ଧାର ବିଳିବିଳି । କମା ହୋଇ ଧିକି ଧିକି ଜଳୁଥିବା ଗୋଲଟଣ ଆଲୁଅଟି ତେଲ ଅଭାବରୁ, ଅବା ବତି ଛୋଟ ହୋଇ ନ ପାଇବାରୁ ଉପରେ ବତି ପାଉଁଶ ହୋଇ ଆପେ ଲିଭିଛି । ହଉ ଲିଭୁ, ଘରର କବାଟ ବନ୍ଦ ଅଛି । ବାହାର ପଟକୁ ଥିବା ଉଚ୍ଚ ଝରକାର ରେଲିଂ ଫାଙ୍କରେ ଆକାଶରୁ ଚେନାଏ ଓ କେତେଗୁଡ଼ିଏ ତାରା ଦିଶୁଛନ୍ତି । ବେଳେବେଳେ କେତୋଟି ଜୁଳୁଜୁଳିଆ ପୋକ ବି ଆଖିମିଟିକା ମାରିଦେଉଛନ୍ତି । ଦୂରରୁ ନଦୀଖଣ୍ଡି ଆଡ଼ୁ ଅଣ୍ଡିରା ବିଲୁଆର ବିକଟାଳିଆ ବୋବାଳି ଶୁଭୁଛି ଯେ, ଅଭ୍ୟାସ ତ ହେଲାଣି, ଡର ବା ମାଡ଼ିବ କାହିଁକି ? ତେବେ ପ୍ରଥମେ ଅଗ୍ନନକ ସେଇ ଭେରଣ୍ଡା ରଡ଼ିରେ ବିଦ୍ୟାଧରୀର ଛାତି ଧଡ଼କି ଉଠିଥିଲା । ଅଭ୍ୟାସହିଁ ତାକୁ ସାନ୍ତ୍ୱନା ଦେଇଥିଲା, ମନରେ ସାହସ ଆଣିଥିଲା ।...

ବିଦ୍ୟାଧରୀ ତା'ର ଏକୁଟିଆ ଜୀବନର ଏକମାତ୍ର ସାହସ, ଭରସା ଓ ଅଭୟପ୍ରଦାୟିନୀ ଜନନୀ ଦୁର୍ଗାଙ୍କ ନାମ ମନରେ ଜପି ଜପି ଶୋଇବାକୁ ଚେଷ୍ଟା କଲା । ଅନ୍ୟ କେଉଁ ଭବନା, ଗାତ ଭିତରୁ ମୂଷା ଭଙ୍କି ମାରିଲା ପରି, ମନର ଅର୍ଗଳିତାର ଫାଙ୍କରେ ପଶିଆସିବାକୁ ଉଦ୍ୟମ କଲେ, ସଂକଳ୍ପର ରଡ଼ିରେ ତାକୁ ତଡ଼ିବାକୁ ଲାଗିଲା । ଏହିପରି ସଂଘର୍ଷ ଭିତରେ କେତେବେଳେ ତା'ର ଆଖିପତାକୁ ନିଦ ମାଡ଼ିବସିଲା ଓ ସେ ଗଭୀର ନିଦ୍ରାରେ ନିମଗନ ହେଲା, ସେ ବା ଜାଣନ୍ତା କିପରି !

ବରଂ, ସପନ ଭିତରେ କେତେ ସୁଖ ଓ ଆନନ୍ଦ ! ଆସିଛି ବିଦ୍ୟାଧରୀ; ସଙ୍ଗରେ ଆଣିଛି ତା'ର ଲବକୁଶଙ୍କ ପରି ଦିଓଟି ସୁନ୍ଦର ପୁଅ । ବରଷେ ଲେଖାଏଁ ସାନ ବଡ଼, କିନ୍ତୁ ଦିଶନ୍ତି ତ ଏକା ବୟସର, ଯାଆଁଳା ପରି । ସେଥିରୁ ଗୋଟିଏ ମାଗିବି କେଉଁ ସାହସରେ ? ବିଦ୍ୟାଧରୀ ସିନା ମନା କରିବ ନାହିଁ, ତା ବର ମନା କରିପାରେ । ଅବା ଯଦି କହିବ, 'ମୁଁ ତମକୁ ପୁତ୍ରଦାନ କରିବାକୁ ସମର୍ଥ । କିନ୍ତୁ ବିଦ୍ୟାଧରୀ, ତମର ଅପା ମର୍ଜିବେ ନାହିଁ । ଦୁନିଆ ତମର ନିନ୍ଦା କରିବ । ତେଣୁ, ତମେ, ଏ ଦିଗରେ ନିଶ୍ଚୟ ହତଭାଗିନୀ । ତମେ ବିବାହ କର, ସଂସାର କର । ତମେ ସମ୍ମତ ହେଲେ ମୁଁ ବର ଠିକ କରିବି । ତମେ ଗରବିଣୀ ଗୃହଲକ୍ଷ୍ମୀ ହେବ । ତମେ ପୁତ୍ରକନ୍ୟାମାନଙ୍କର ଗରବିଣୀ ମାତା ହେବ । ତୁମର ଭଉଣୀ ତ ହୋଇସାରିଛନ୍ତି, ତମେ ବା ନ ହେବ କାହିଁକି ? ଶହକେ ଏପରି ଗୋଟିଏ ହତଭାଗିନୀ ଥାଇପାରନ୍ତି, କିନ୍ତୁ ତୁମେ ସେହି ଶହକେ ଗୋଟିଏ ହତଭାଗିନୀ ନ ହୋଇପାର, ବିଦ୍ୟାଧରୀ ?

କାହିଁକି ବିଶ୍ୱକର୍ତ୍ତା ଏପରି ଜଣେ ଉହଲ-ବିକଳିଆ ହତଭାଗିନୀ ସର୍ଜନା କରନ୍ତେ ? ତୁ ସେପରି ହତଭାଗିନୀ ନୋହୁ ଲେ ! ବିଦ୍ୟାଧରୀ ଏହିପରି ଚିନ୍ତାରେ ନିମଗନ ହୋଇ ଛଟପଟ ହୋଇ ନିଶା ଯାପନ କଲା ।

× × × ×

ଶ୍ରାନ୍ତିହାରିଣୀ ଶାନ୍ତିପ୍ରଦାୟିନୀ ନିଦ୍ରାଦେବୀ ଅଭିମାନିନୀ, ଆଦର ନପାଇ ବିଦ୍ୟାଧରୀକୁ ତ୍ୟାଗ କରି ଦୟାମୟୀ ତଥାପି ପଳାୟନ କରି ନ ଥିଲେ । ତାକୁ ଚଟହଟା କରିବାକୁ ଏକଡ଼ ସେକଡ଼ ଛଟପଟ କରୁଥିଲେ । ରାତ୍ରିର ଶେଷ କେଇ ଘଡ଼ି ବେଳକୁ ତା'ର ଦୁଇ ଆଖିର ପଲକଗୁଡ଼ିକୁ ସେ ବନ୍ଦ କଲେ । ଚେତା ହଜାଇଲେ । ସେ ଗଭୀର ନିଦ୍ରାରେ ନିମଗ୍ନ ହେଲା ।

ଯାହା କହନ୍ତି, ବିଦ୍ୟାଧରୀ ନିଦ୍ରାରେ ଅଚେତନ ହେଲା । ରାତି ପାହିଲା । ଲୋକେ ଉଠି କାରବାର ହେଲେ । କୁବେର ଦେହେରଙ୍କ ଘର ଆଗ ବାଟରେ ଗ୍ରାମର ପୁରୁଷେ, ସ୍ତ୍ରୀ ଓ ପିଲାମାନେ ମହାଦେବଙ୍କ ପୋଖରୀକୁ ଅବା ସେଇ ଶିବ ମନ୍ଦିର ହୁଡ଼ା ବାଟେ ନଦୀରେ ସ୍ନାନ କରିବାକୁ, ପଡ଼ୁ ପଛେ ପାଏ ବାଟ ବାଲିରେ ଚଲା, ପାଣିର ଧାର ତ ଆରପାଖର ତଟ ବା ବନ୍ଧର ତଳେ । ବେଶି ଡେରି ହେଲେ ବାଲି ତାତିଯିବ ।

ତଥାପି, କୁବେର ବେହେରଙ୍କର ଏକୁଟିଆ ଘରର ବାରି ଫାଟକର ତାଟି କବାଟ ଖୋଲି ନାହିଁ । ଘରଖଞ୍ଜାର ଗୁଳଟା ଦିଶୁଛି । କେଜାଣି, ଭିତରେ କବାଟ ଖୋଲି ଗୁକର ଓ କୋଠିଆମାନେ ଆତଯାତ ହେବେଣି । କିନ୍ତୁ କେଡ଼େ ଆଚର୍ଯ୍ୟ ତ କଥା, ସବୁ ଦିଶୁଛି ଶୂନ୍‌ଶାନ୍ । ବିଦ୍ୟାଧରୀ ଦେବୀ ଓ ଗୁକରଣୀ ତ ଆଗ ଉଠି କାରବାର ହୁଅନ୍ତେଣି, କିନ୍ତୁ ଶୂନ୍‌ଶାନ୍ ଲାଗୁଛି । ସବୁ ଚୁପ୍‌ଚାପ୍ ।

ହଁ, ଆଗକୁ ସେପରି ଦିଶିବାର କଥା ; କିନ୍ତୁ ବିଚିତ୍ର ଘଟଣା ଘଟିଛି । ଆଗ ପଡ଼ିଲା ତ ବିଦ୍ୟାଧରୀର ଦୃଷ୍ଟିରେ । ତା'ର ଗେଳନିଆ ଚିତ୍‌କାର ପଡ଼ିଲା ତା'ର କୋଠରୀର ସଂଲଗ୍ନ ବାରଣ୍ଡାରେ ଶୋଇଥିବା ବୁଢ଼ୀ ଆଶ୍ରିତା ଦାସୀଟି, ବୃନ୍ଦାବତୀ, ନିରାଶ୍ରୟା ଟଣ୍ଡୀ ଘରର ଅନାଥିନୀଟି, ବିଦ୍ୟାଧରୀକୁ ଝିଅ ବୋଲି ଡାକେ, ଆଉ ବିଦ୍ୟାଧରୀ ତାକୁ ଡାକେ ମାଉସୀ । ସେଇ ଡାକରେ ସେ ବାନ୍ଧି ହୋଇଛି ।

ସବୁଦିନ ପରି ସେଦିନ ମଧ୍ୟ ବୃନ୍ଦାବତୀ ମାଉସୀ ଛାଆଁକୁ ବଡ଼ି-ଭୋରରୁ ଉଠିଥିଲା । ଝାଡ଼ୁଖଣ୍ଡେ ଧରି ଅଗଣା ଓଳାଇ ଫାଟକ ପାଖକୁ ଗଲା । ଦେଖିଲା, ଫାଟକ ଠିକ୍ ଅଛି, କେହି ଯାଇନାହିଁ କି ଆସି ନାହିଁ । କେମିତି ବା ଜାଣନ୍ତା, କ'ଣ ଗନ୍ଧ ବାରନ୍ତା ! ଗୋଟାଏ ଖୋଇ, କହିବାର ଯାହା ସମ୍ଭବ ନୁହେ । ତେବେ ଗୋଟିଏ ଘଟଣା ତା ଆଖିକୁ ଅଲଗା ଦିଶୁଛି, ଚଳନକୁ ଅଡ଼ୁଆ ଅଡ଼ୁଆ ଲାଗୁଛି ।

କ'ଣ କି, ସେ ଏ ଘରେ, ବିଦ୍ୟାଧରୀ ଦେବୀଙ୍କର ଘରେ ଆଶ୍ରା-ନେବା ଦିନରୁ, ହେବ ତ ପ୍ରାୟ ଗୁନିମାସରୁ ଅଧିକ, ଯେତେ ବଡ଼ିଭୋରରୁ ଉଠି ଏଣେ ଆସିଲେ ଦେଖେ ବୁଢ଼ା ସାଆଁନ୍ତେ କୁବେର ବାବୁ ଉଠି, କବାଟ ମୁକାଳି ଠେଙ୍ଗାର ଆଶ୍ରା ଧରି ଘର ଆଗରେ ପାହୁଣ୍ଡ ଗୁଲୁଛନ୍ତି । ଅଳ୍ପ ଦୂର ଯାଇ ଠିଆହୋଇ ଅଣ୍ଟା ସଳଖୁଛନ୍ତି । ନିଶ୍ୱାସ ଭିତରକୁ ଶୋଷି ନେଉଛନ୍ତି ବେଗ-ବେଗରେ, ପୁଣି ହାଉଲେ ହାଉଲେ ଗୁଲୁଛନ୍ତି । କୁଆଡ଼େ ଏମିତି କରିବାକୁ କବିରାଜେ କହିଛନ୍ତି ।

ହ, ବଞ୍ଚିବେ ବିଶାଶହେ ବର୍ଷ ତ ନିଶ୍ଚୟ, ଆହୁରି ବି ଅଧିକ ନ ବଞ୍ଚିବେ ବୋଲି କିଏ କହିବ ! ଲୋକଙ୍କର ସେହି ପ୍ରଚଳିତ କଥନିଟା ତ ମନରେ ଘୋଳେଇ ହେଉଥାଏ—ଜନମ-ମରଣ-ବରଷା, କହି ନ ପାରନ୍ତି

ପ୍ରତୀକ୍ଷା । ମନ କେଜାଣି କାହିଁକି ଓଟାରି ହେଉଥିଲେ ବି ସେ ନିତ୍ୟକର୍ମ ସାରିବାକୁ ଶିବ ପୋଖରୀର ହୁଡ଼ା ଉପର ବଣୁଆ ଥାନକୁ ଛୁଟିଲା । କିନ୍ତୁ କେଜାଣି କାହିଁକି ତଥାପି ଦୁଡ଼ିଗୁଡ଼ୁଆ ମନକୁ ତରଛ ଛୁଇଁଲା—ତାଙ୍କ ପଢ଼ି-ଥିଲେ କେମିତି କ'ଣ ଘଟେ, ମଣିଷ ଦେହରେ ବାସ କରି ଆତଯାତ କରଉଥିବା ନାଟ କରଉଥିବା ଶୂନ୍ୟ ପୁରୁଷ କେଉଁ ଛଟକରେ ସମସ୍ତଙ୍କୁ ଗୃହୁଁ ଗୃହୁଁ ଝଲକା କରି ଖସି ଛୁ-କରେ, ଶୂନ୍ୟରେ ମିଶେ, ସମସ୍ତେ ଗ୍ରହିଁଥାନ୍ତି ଜଳକା !

ଏହିପରି କେତେ କ'ଣ ଭବି ଭବି କେମିତି ସହଳ ସହଳ ଫେରି ଆସିଲେ ବିଦ୍ୟାଧରୀ ସାଁତାଣୀ ବିଛଣା ଛାଡ଼ିବା ଆଗରୁ ଫେରିଆସିବ ସେହି ଚିନ୍ତାରେ ଧପାଳି ଗ୍ଲାଲିଲା । ସେ ଜାଣେ, ବିଦ୍ୟାଧରୀ ଉଠିଲେ, ନିଜେ ସବୁ କାମ କରିଯିବେ । ପଦେ ଗାଳି ଦେବେ ନାହିଁ ତ, କାହିଁକି ଉଛୁର ବୋଲି ପଗ୍ଚାରିବେ ନାହିଁ । ଟିକିଏ ହସିବେ । ସେତକ ତ ସ୍ତବ୍ଧ ମାଡ଼ନ୍ତି ତୀବ୍ର । ବୃନ୍ଦାବତୀ ପୋଖରୀ-ହୁଡ଼ାରେ ଉପସ୍ଥିତ ହେଲା ।

କେଜାଣି କାହିଁକି ତାକୁ ତୁଚ୍ଛାଟାରେ ଡରଡର ଲଗୁଛି । ହେଲଟି, ଲୋକେ ନଦୀକୂଳଆଡ଼େ ଯିବାକୁ ଲଗିଲେଣି । ପୋଖରୀ ଆଡ଼କୁ ବି ଆସି ପାରନ୍ତି । ଅନର୍ଥକ କାହିଁକି ସେ ମାନସିକ ଅଶାନ୍ତି ଭୋଗୁଛି ? କୁବେରବାବୁ ଉଠି ନାହାନ୍ତି କି ତାଙ୍କ ଘରର କବାଟ ଖୋଲି ନାହାନ୍ତି । ସେଥିରେ ତାର କି ଥାଏ ? ବୁଝିବାର ଲୋକ ତାଙ୍କ ଝିଅ ବିଦ୍ୟାଧରୀ । ସେ କାନ ମୋଡ଼ି ହେବ । ବୃନ୍ଦାବତୀ ସେଇଆ କଲା ।

× × × ×

ବିଦ୍ୟାଧରୀର ନିଦ୍ରାଭଙ୍ଗ ଅନେକ ବେଳକୁ ହୋଇଥିଲା । ଅଗଣାକୁ ଉଠି ବୃନ୍ଦାବତୀ ଯିବାବେଳେ ସବୁଦିନ ପରି ସେଦିନ ବଡ଼ିସକାଳେ ତା'ର ନିଦ୍ରାଭଙ୍ଗ ହୋଇଥିଲା । କିନ୍ତୁ ବିଛଣା ଛାଡ଼ି ପଦାକୁ ଆସିବାର ଅବଶ୍ୟ କ'ଣ ସେ ଅନୁଭବ କରି ନ ଥିଲା । କେବଳ ବିଛଣାରେ ପଡ଼ି ସେ ଏକଢ଼ ସେକଢ଼ ହେଉଥିଲା ।

ବିଗ୍ଚରୁଥିଲା, ବୃନ୍ଦାବତୀ ସବୁଦିନ ପରି ନିତ୍ୟକର୍ମ ସାରି ଦୈନନ୍ଦିନ କର୍ମରେ ମନପ୍ରାଣ ଢାଳି ଦେବାକୁ ପ୍ରସ୍ତୁତ ହେବାକୁ ଯାଇଛି । ନଦୀକୁ ହୁଏତ ଯିବ । ସେଇଠୁ ଆସି ଗୋଟଣୀ-ପାର ପରି କାର୍ଯ୍ୟରେ ଲେଟିଯାଉଥିବ ।

ଅପାରଗ ବୃଦ୍ଧ ବାପାଙ୍କଠ ସେବିକା ତ ଜାଣ ସେଇ । କେଉଁ ଜନ୍ମରେ ସେ ତାଙ୍କର ଗେଲବସରୀ ଝିଅ ଥିଲା, ଅବା ସେ ତା'ର ଗେଲବସର କୋଡ଼-ପୋଛା ପୁଅ ଥିଲେ । ସେବାକାରିଣୀ ସ୍ନେହମୟୀ ଜନନୀ !

ଏକୁଟିଆ ନିଃସଙ୍ଗ ଜୀବନର କ୍ଷଣକ ପାଇଁ ହେଉ ପଛେ ସାନ୍ତ୍ୱନା-ଦାୟିନୀ ସଙ୍ଗିନୀ ନିଦ୍ରା ଦେବୀ । ବିଦ୍ୟାଧରୀ ତାଙ୍କୁ ବିଦାୟ ଦେଇ ଧଡ଼ପଡ଼ ହୋଇ-ଉଠିଲା । କିଏ ଯେପରି ବେତ୍ରାଘାତ କରିବାକୁ ଉଦ୍ୟତ ହେଉଛି, ଏହି ରୀତିରେ ସେ ଉଠି ଦାଣ୍ଡପଟକୁ ବୁଲି ଆସିଲା । ଏ କି ବିଚିତ୍ର, ବାପାଙ୍କ ଘରର କବାଟ ଖୋଲି ନାହିଁ କାହିଁକି ? ସେ ତ ସବୁଦିନେ ବହୁ ଆଗରୁ ଉଠିଥାନ୍ତି । ତାଙ୍କ ପ୍ରକୋଷ୍ଠର କବାଟ ଖୋଲି ଅଗଣାର ଏପାଖ ଫାଟକ, ଯାହା ଭିତରୁ ବନ୍ଦ କରା ହୋଇଥାଏ ତାହା ବି ଖୋଲା ହୋଇଥାଏ । ଆଜି ତ ସବୁ ବନ୍ଦ ।

କିନ୍ତୁ ଏଥିରେ ବିସ୍ମିତ ହେବାର କ'ଣ ଅଛି, ଅସ୍ୱାଭାବିକତା ବା କ'ଣ ହୋଇପାରେ, ଏହିପରି ବିଗ୍ତର କରି ବିଦ୍ୟାଧରୀ ନିଜର ପ୍ରକୋଷ୍ଠକୁ ବାହୁଡ଼ି ଆସିଲା । ବିଗ୍ତରିଲା, ବୃନ୍ଦାବତୀ ଅନେକ ବେଳରୁ ପଦାକୁ ଗଲାଣି, ସେ ଶୀଘ୍ର ବାହୁଡ଼ି ଆସିବ । ସେ ଆସିଲେ ଘରେ ରହିଲେ, ସେ ନିଜେ ନଦୀକୁ ଯିବ । କୋଠିଆ ପିଲା ଉଠିସାରିଥିବ । ସେ ଓ ବୃନ୍ଦା ଘରେ ରହିବେ, ବାପା ଉଠିଲେ, ତାଙ୍କର ଯତ୍ନ ନେବେ ।

ତଥାପି ମନ କାହିଁକି ଦୁଡ଼୍‌ଗୁଡ଼୍ ହେଲା । ଦ୍ୱନ୍ଦ୍ୱର ବୋଝକୁ ମୁଣ୍ଡରେ ବୋହି ସେ ଦକଦକ ହୋଇ ଘର ଛାଡ଼ି ଯିବ କିପରି ! ଯନ୍ତ୍ରଗ୍ତଳିତ ପରି ସେ ପୁଣି ଅଗଣାକୁ ଓ ଖଞ୍ଜା ଭିତରକୁ ଫେରିଆସିଲା । କେଜାଣି କେଉଁ ଅଜଣା ଆତଙ୍କରେ ମନ ଥରିଉଠୁଥାଏ ।

ପୁଣି ଖଟ ଉପରେ ବିଛଣାରେ ପଡ଼ି ଏକଡ଼ ସେକଡ଼ ହେଲା । ଆହୁରି ଥରେ ଶୟନ କରିବାର ବିଫଳ ଚେଷ୍ଟା । ଆଖି ବୁଜି ନିଦ୍ରାର ଆଳରେ ଏକଡ଼ ସେକଡ଼ । ମିଞ୍ଜିମିଞ୍ଜି ଆଖି । ଆଲୁଅର ପ୍ରବେଶ ତ ଉପହାସ । ନିଜ ଉପରେ ବିରକ୍ତି, ଶଯ୍ୟା ତ୍ୟାଗର ଦୃଢ଼ ସଂକଳ୍ପ । ଶଯ୍ୟା ତ୍ୟାଗକରି ଦୃଢ଼ ପଦରେ ଆଗେଇଗଲା ବିଦ୍ୟାଧରୀ ।

ମଝି କବାଟ ଖୋଲି କବାଟ ଦୁଇଫାଳ ଦୁଇ ଆଡ଼କୁ ଓଟାରି ଖୋଲିଲା । ଭଗ୍ୟ ଭଲ ଯେ କବାଟ ସେପାଖରୁ ବନ୍ଦ ହୋଇ ନ ଥିଲା ।

ସାଧାରଣତଃ ଅପା ବିଦ୍ୟାଧରୀର ବାହାଘର ଆଗରୁ କବାଟ ବନ୍ଦ ରହୁଥିଲା । ତା'ର ବାହାଘର ପରେ ଖୋଲା ରହୁଥିଲା । ପୁଣି କ'ଣ କୁବେରଙ୍କ ମନକୁ ଆସିଲା, ବିଦ୍ୟାଧରୀକୁ କହିଲେ, "ସେ ପାଖରୁ ବନ୍ଦ କରିଦେବୁ ମା, ବାରଲୋକ ତାଙ୍କ କାମରେ ତ ଆସୁଛନ୍ତି, ଘରେ ପଶୁଛନ୍ତି, ବସୁଛନ୍ତି, କଥାଭାଷା ତ ହେଉଛନ୍ତି, ବେଳେବେଳେ ଘୋଡ଼ା ପରିକା ବେମହତିଆ ହେଁ-ହେଁ-ହସ, ହସୁଛନ୍ତି । ହେରେଷାଙ୍କର ହେରେଷାରଡ଼ି । କାହା ପାଟିରେ କିଏ ହାତ ଦେବ ! ସେବକାଳ ଲୋକେ ପଗ ସୁନାପରି କଥନି ଛାଡ଼ି ଯାଇଛନ୍ତି, 'ଆଲୋ ସଖୀ ଆପଣା ମହତ ଆପେ ରଖି ।' ଶୁଣିଲ, ଜାଣିଲ; ଏଣିକି ତମର ମହତ ତମ ହାତରେ । ଜାଣ ତ, 'ସବୁ ସରିଲେ ହୁଏତ ମିଳିବ, କିନ୍ତୁ ମହତ ସରିଲେ ସବୁ ସରିଲା । ଅଣବାହୁଡ଼ା ଲୋ ମା' ବିଦ୍ୟାଧରୀ ! ତେଣୁ ସାବଧାନ !

"ଆଲୋ ମା, ତମ ବୋଉ ପାର୍ବତୀ ଦେବୀ ତ ଶିବ-ଲୋକକୁ ଗଲେ । କିଏ ଆଉ ତମକୁ ଭଲମନ୍ଦ ଶିଖାଇବ ? ବିଦ୍ୟାଧରୀ ସୁଖରେ ସଂସାର କରୁଛି । ତୋ' ଚିନ୍ତା ମୋ ମୁଣ୍ଡରେ । ତୁ ଯାହା କଲେ ସୁଖୀ ହେବୁ ମୋର ସେଥିରେ ରାଜି ।"

ଏହିପରି ଆହୁରି କେତେ କଥା ବିଦ୍ୟାଧରୀର ମନେ ପଡ଼ୁଛି । ତା'ର ବାପା ବାରମ୍ବାର ଏସବୁ କଥା ତାକୁ କହନ୍ତି । କେତେଥର ଆଖି ପୋଛିଛନ୍ତି । କାହିଁକି ଏତେ ବେଳଯାଏ ନ ଉଠିଲେ ? ସେ ନିଶ୍ଚୟ ଭିତର ପାଖ ବାଟେ କବାଟ କିଳିଛନ୍ତି । ବାହାର ଆଡ଼ରୁ କବାଟ ବା ଖୋଲିବ କିପରି ? ଆହୁରି ଡେରିଯାଏ ଚାକିବାକୁ ହେବ ଅବା ଭିତର ଆଡ଼୍ ଯିବାକୁ ପଡ଼ିବ ।

ବିଦ୍ୟାଧରୀ ଧୈର୍ଯ୍ୟ ହରାଇଲା । ଶିକୁଳି ଖୋଲିଲା, କାଠର ଡିଙ୍କିଆ କଷ୍ଟରେ କାଢ଼ି କାନ୍ଥରେ ଡେରିଲା । ଲୁହାର ଛିଟ୍‌କିଣି ହୁଗାଳିଲା । କବାଟ ବି'ଫାଳ ।

କବାଟ ଟାଣିଲା । ଖୋଲିଲା ନାହିଁ । ଆରେ, ସେପାଖେ ଭିତରୁ ଜଞ୍ଜିର ଦିଆ ହୋଇଛି । କେଜାଣି କାଠ ଡିଙ୍କିଆ ଓ କିଳଣି ବି ଦିଆ ହୋଇଥିବ । ବିଦ୍ୟାଧରୀ ଭାବିଲା, ମହା ସନ୍ଦେହୀ ତାର ପିତା । କିଏ ଜାଣେ, କ'ଣ ତାଙ୍କର ମନରେ ଥିଲା ଯେଉଁଥିପାଇଁ ସେ ଏପରି କରିଛନ୍ତି ।

ଅତି ବିରକ୍ତିଭରେ ଭକ୍ତି ପାସୋରି ସେ କବାଟରେ ଘଡ଼୍ଘୋରେ ପ୍ରହାର କରିବାକୁ ଲାଗିଲା । କବାଟର ଶବ୍ଦ ଓ ମୁହଁର ଡାକ ସବୁ ବ୍ୟର୍ଥ ହେଲା । କବାଟ ଖୋଲିଲା ନାହିଁ । ସେ ନିରସ୍ତ ହେଲା । ନିରୁପାୟ ହେଲା । ନିଶ୍ଚୟ କ'ଣ ଗୋଟାଏ ଆତଙ୍କପ୍ରଦ ଘଟଣା ଘଟିଛି, ଏହିପରି ସମ୍ଭାବନାରେ ସେ ଗୋଟାଛାଏଁ ଥରିବାକୁ ଲାଗିଲା । କ'ଣ ଘଟିଥାଇପାରେ ଏହା ତ ଚିନ୍ତାର ଅଗମ୍ୟ !

ଥରିଲା ପାଦରେ ବିଦ୍ୟାଧରୀ ନିଜର ପ୍ରକୋଷ୍ଠରୁ ବାହାରି ଖଞ୍ଜାକୁ ଆସିଗଲା । ଖଞ୍ଜା ଭିତରୁ ଗଳିଘରକୁ ଗଲା । ସେ ଘରର କବାଟ ଖୋଲା । କୋଠିଆଟୋକା କବାଟ ଖୋଲି ବାହାରକୁ ଚାଲିଗଲାଣି । ତା ନାମ ପଗୁଆ; କୋଡ଼ିଏ ଏକୋଇଶ ବର୍ଷର ଗରିବ ତେଲି ଟୋକା ।

ବିଦ୍ୟାଧରୀ ପଦାକୁ ଆସିଲା । ପଗୁଆର ନାମ ଧରି ଡାକ ଛାଡ଼ିଲା । ପଗୁଆ ମହାଦେବ ପୋଖରୀ ଆଡ଼େ ମୋହିଁଥିଲା । କାନରେ ଡାକ ବାଜିବାରୁ ଫେରିଆସିଲା ଧାଇଁଧାଇଁକା । ଘରପାଖକୁ ଆସନ୍ତେ ଦେଖିଲା ବିଦ୍ୟାଧରୀ ଅପା ଆସି ଘର ଆଗରେ ଠିଆ ହୋଇଛନ୍ତି । ପଗୁଆ ପଚାରିଲା, 'କ'ଣ ଅପା, କାହିଁକି ଏମିତି ଜରୁରି ଡାକି ପଡ଼ିଆ ବାଟରୁ ବାହୁଡ଼ାଇଲ ?'

ବିଦ୍ୟାଧରୀ ଦୁଃଖ ପ୍ରକାଶ କରି କହିଲା, 'ଦେଖୁଛୁ ତ ! ବେଳ କେତେ ହେଲାଣି, ଖରା ପଡ଼ିଲାଣି । ଆଜି ଆମର ସଭିଙ୍କର ଉଠିବାକୁ ଡେରି ହୋଇଛି । କିନ୍ତୁ କେଡ଼େ ଆଚମ୍ବିତ କଥା, ବାପାଙ୍କର ନିଦ ଭାଙ୍ଗି ନାହିଁ । ଘରର କବାଟ ଖୋଲି ନାହିଁ । ଦାଣ୍ଡର ଫାଟକଟା ତାଙ୍କ ଘର ସଲଗ୍ନ । ସେଇଟା ସେ ଖୋଲିନାହାନ୍ତି । ବନ୍ଦ ଅଛି ।

'ବୃନ୍ଦାବତୀ କେତେବେଳୁ ତ ଗଲେଣି । ନଈକି ଗଲେ କି କ'ଣ ଫେରିନାହାନ୍ତି । ସେ କେତେବେଳେ ଫେରିବେ କେଜାଣି ! ଟିକିଏ ମଠୁଆ ଯେ !

'ମୁଁ ଭିତର ଆଡ଼ୁ ଖୋଲି ବାପାଙ୍କ ଘରେ ପଶି ଆଗ କବାଟଟି ଖୋଲିବାକୁ ଚେଷ୍ଟା କଲି । କବାଟ ତାଙ୍କ ସିନ୍ଦୁକରେ ବାଜିଲା । ଦି'ପାଖ ଯାକ । ଖୋଲିବ କିପରି ? ତୁ ପଛ ଖଞ୍ଜାବାଟେ ପଶି ଫାଟକ ଖୋଲ । ମୁଁ ସେହିବାଟେ ଯିବି । ଦାଣ୍ଡପାଖର କବାଟରେ ହାତ ବାଡ଼େଇଲେ ବାପାଙ୍କୁ

ଶୁଭିବ । ତାଙ୍କର ଦଉଡ଼ି ଖଟିଆ ସେଇ କଡ଼କୁ ପଡ଼ିଥିବ ତ, ସେ ଶୁଣିବେ ଓ ଫିଟାଇବେ ।

ଦାଣ୍ଡ ପାଖର ଟିଣ ଫାଟକ ଅବା ଭିତର ପାଖର ଯାଉଁଳି କବାଟ ଖୋଲିବାର ସବୁ ଚେଷ୍ଟା ବିଫଳ ହେଲା । ପାଟିର ଶବ୍ଦ ହାତ ବାଡ଼ିଆର ଧଡ଼ଧଡ଼ ଶବଦ କିଛି ଫଳପ୍ରଦ ହେଲା ନାହିଁ । କୋଠରି ଭିତରେ ପଲଙ୍କ ଉପରେ ହେବ ପଗଣ, ସୁଖ-ନିଦ୍ରାରେ ଶାନ୍ତିରେ ଶୋଇଥିବା ଲକ୍ଷପତି ଅବା ଧନକୁବେର ନାମରେ ପରିଚିତ ମିତବ୍ୟୟୀ କୁବେର ବେହେରା ବୃଦ୍ଧଙ୍କର ସୁଖ ନିଦ୍ରା ତ ଭଙ୍ଗ ହେଲା ନାହିଁ ! କବାଟ ଖୋଲିଲା ନାହିଁ; ଅବା ଫାଟକ ଫିଟିଲା ନାହିଁ ।

ଶବଦରେ ଆକୃଷ୍ଟ ହୋଇ ଗଲା-ଅଇଲା କେତେ ଆବାଳବୃଦ୍ଧବନିତା ସେଠାରେ ଉପସ୍ଥିତ ହେଲେ । କୋଠିଆ ପରିଆ, ଘରର ଚାକରାଣୀ, କହ ବିଦ୍ୟାଧରୀ ଦେବୀଙ୍କ ସହାୟିକା ବୃନ୍ଦାବତୀ ଏବଂ ସ୍ୱୟଂ ବିଦ୍ୟାଧରୀ ଦେବୀଙ୍କ ବାରଣ ନ ମାନି ଗ୍ରାମଲୋକେ ତ ରୁଣ୍ଡ ହୋଇଗଲେ ।

ସେମାନଙ୍କ ଉପରେ ଟିଣ ଫାଟକ ଠିଆ ମେଲା ହେଲା । ତା'ପରେ ଦାଣ୍ଡପାଖର ଯାଉଁଳି କବାଟ । ବିଦ୍ୟାଧରୀ ଆଗରେ ଥାଏ । ତା ପାଖରେ ବୃନ୍ଦାବତୀ । ସେମାନଙ୍କ ପଛରେ କୋଠିଆ ପରିଆ । ସମସ୍ତଙ୍କର ଦୃଷ୍ଟିରେ ପଡ଼ିଲା ଗୋଟିଏ ବିଚିତ୍ର ବିସ୍ମୟକର ଦୃଶ୍ୟ !

କୁବେର ବେହେରା ଛାତିଏ ଉଚ୍ଚର ଗୋବମଗ ବଡ଼ କାଠ ବାକ୍ସର ଆଗରେ ଆଣ୍ଠେଇ ବସିଥିଲେ । ଆଖି ଦିଓଟି ମୁଦି ହୋଇଥିଲା । ମୁଣ୍ଡଟି ଢଳି ପଡ଼ି ଲାଗିଥିଲା କାଠ ସିନ୍ଦୁକର ଗୋଟିଏ ଗୋବ ଉପରେ । ଚନ୍ଦାଳିଆ ମୁଣ୍ଡର ଝୋଟ ପରି ଅଳ୍ପ ଧୋବଲା କେଶ ଫୁର୍‌ଫୁରିଆ । ଘରିକୋଡ଼ି ତେଲ ଘଷିଥିଲ ତ, କେଶ ପୁଳିଏ, ହେଉ ପଛେ ଧୋବ ଫରଫର, ଅଛି ଏତେ ଭାଗ୍ୟର କଥା !

ତେବେ ବି ତାଙ୍କର ଲୋଭ ତ ଛାଡ଼ି ନ ଥିଲା ! ସେ କାଠ ବାକ୍ସର ତାଲାଟିକୁ ଦୁଇ ହାତରେ ଜାବୁଡ଼ି ଧରିଥିଲେ । ପ୍ରାଣପକ୍ଷୀଟି ଉଡ଼ିଯାଇଥିଲା । ଲୋକେ ଶୁଣିଛନ୍ତି, ତାଙ୍କୁ ଶୁଣାଇବାକୁ ଓ ତାଙ୍କ ଆଗରେ ଭଲେଇ ହୋଇ

ପ୍ରମାଣ ଦେବାକୁ ଚେଷ୍ଟା କରିବାକୁ କୁବେର ଲୋକଙ୍କୁ ବରବର କହୁଥିଲେ, 'ତମରିମାନଙ୍କ ଉପକାର କରିବାକୁ ମୁଁ ଚଢ଼ା ଦରରେ ଚକ୍ରବୃଦ୍ଧି ହାରରେ କରଜ ଦଉଛି । ତମର ବନ୍ଧକି ମାଲ ମୁଁ ନେଇଯିବି ନାହିଁ ସଙ୍ଗରେ; ପୁଣି ସୁଧ ଅଧିକ ହେଲେ ତମେ ମିତବ୍ୟୟୀ ହେବ । ସାବଧାନ ହେବ ।'

ମରଣ ପରେ ଏବେ ସେ ତାଙ୍କର ଶେଷ ଉପଦେଶ ଦେଇ ଯାଉଛନ୍ତି 'ତମର ସବୁ ଦରବ ଏହି ବାକ୍ସରେ ରହିଛି । ମୁଁ ଥିଲି ଯକ୍ଷ । ବିଦାୟ ନେଉଛି । ତମ ଧନର ଦାୟିତ୍ୱ ତମେ ନିଅ ।'

ଭୂମିରେ ଲୋଟିଥିବା ଦେହଟିକୁ କୋଳାଇ ଧରି ବିଦ୍ୟାଧରୀ ବାହି-ଉଠିଲା । ତଥାପି କୋଲମ ଦେହରୁ କୁବେରର ହାତର ଛାବ ଫିଟିଲା ନାହିଁ ।

ତା ୨୨-୪-୧୯୮୫ — କାହ୍ନୁଚରଣ

ସୋମବାର

କଟକ

—0—

# ଲେଖକଙ୍କର କେତୋଟି ଉପନ୍ୟାସ

| | | |
|---|---|---|
| ଜା | କାହ୍ନୁଚରଣ | ଟ ୧୦-୦୦ |
| ପରୀ | ,, | ଟ ୪-୫୦ |
| ସ୍ୱପ୍ନା | ,, | ଟ ୬-୦୦ |
| ଅଙ୍ଗନା | ,, | ଟ ୩-୦୦ |
| ଜନ୍ତୁଭି | ,, | ଟ ୪-୫୦ |
| ଚଥାନ୍ତୁ | ,, | ଟ ୧୫-୦୦ |
| ଇଷଦ୍ଧ | ,, | ଟ ୧୫-୦୦ |
| ହା ଅନ୍ନ | ,, | ଟ ୮-୦୦ |
| ପଳାତକ | ,, | ଟ ୪-୦୦ |
| ଅନ୍ତରାୟ | ,, | ଟ ୨-୦୦ |
| ପରକୀୟା | ,, | ଟ ୩-୦୦ |
| ଛୁଟିଲେ ଘଟ | | ଟ ୧୫-୦୦ |
| ଅଦେଖା ହାତ | ,, | ଟ ୫-୦୦ |
| ଭୁଲ ହୁଏନା | ,, | ଟ ୩-୫୦ |
| ବଗ ବଗୁଲ | ,, | ଟ ୬-୦୦ |
| ତରଙ୍ଗର ତଳେ | ,, | ଟ ୨-୦୦ |
| ଓଲଟ ପାଲଟ | ,, | ଟ ୩-୫୦ |
| ଏପାଖ ସେପାଖ | ,, | ଟ ୧-୫୦ |
| ଜହ୍ନବାଙ୍କ ଲଜ | ,, | ଟ ୨୫-୦୦ |
| ଭଲ ପାଇବାର ଶେଷକଥା | ,, | ଟ ୨-୦୦ |
| ଦୁଇଆଡ଼ ଦାଉ | ,, | ଟ ୪-୫୦ |
| ତାପସୀ | ,, | ଟ ୧୫-୦୦ |
| ଲଲଟ ଲଖନ | ,, | ଟ ୧୫-୦୦ |
| ଯକ୍ଷ | ,, | ଟ ୩-୦୦ |